ପ୍ରଥମ ସଂସ୍କରଣ : ୧୯୫୦
ପ୍ରକାଶକ :
ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଦାସ,
ମନମୋହନ ପୁସ୍ତକାଳୟ,
କଟକ : ୨ ଓ କଲିକତା : ୧୨,
ଛବି ଓ ପ୍ରଚ୍ଛଦପଟ୍ଟ
ମୁଦ୍ରଣ :
ଶ୍ରୀ ମୋହନ ଚରଣ ଦାସ,
ମନମୋହନ ପ୍ରେସ,
କଟକ : ୨
କଥାବସ୍ତୁ ମୁଦ୍ରଣ :
ନାଜ୍ ଓଡ଼ିଶା ପ୍ରେସ
କଟକ


---

ଦର୍ଶନା : ଦେଢ଼ ଟଙ୍କା

# ସୂଚୀ



## ଚିତ୍ର ସୂଚୀ

# ଗାନ୍ଧିଜୀଙ୍କ ଜୀବନୀର ବିଶେଷ ଘଟଣା

---

୧୮୬୯—ପୋର ବନ୍ଦର କାଥିଆବାଡ଼ରେ ଜନ୍ମ ।

୧୮୮୭-୯୧—ଇଂଲଣ୍ଡରେ ଆଇନ ଅଧ୍ୟୟନ ।

୧୮୯୩-୧୯୧୩—ଦକ୍ଷିଣ ଆଫ୍ରିକା ସତ୍ୟାଗ୍ରହ ।

୧୯୧୪—ଭାରତକୁ ପ୍ରତ୍ୟାବର୍ତ୍ତନ ।

୧୯୧୯-୨୨—ଅସହଯୋଗ ଆନ୍ଦୋଳନ ।

୧୯୨୨—କାରାରୁଦ୍ଧ ।

୧୯୨୩—କାରା ମୁକ୍ତି ।

୧୯୨୪—କଂଗ୍ରେସର ସଭାପତି ।

୧୯୩୦—ଅସହଯୋଗ ଆନ୍ଦୋଳନ, ଦାଣ୍ଡି ଲବଣ ଆଇନ ଭଙ୍ଗ ସତ୍ୟାଗ୍ରହ, ଏରବ୍ୟାଡା ଜେଲରେ କାରାରୁଦ୍ଧ ।

୧୯୩୧—ଗାନ୍ଧି ଇରଉଇନ୍ ଚୁକ୍ତି, ଦ୍ୱିତୀୟ ଗୋଲଟେବୁଲ ବୈଠକରେ ଯୋଗଦାନ ।

୧୯୩୨—ପୁନା ଚୁକ୍ତି ।

୧୯୩୩—ଅସ୍ପୃଶ୍ୟତା ନିବାରଣ ଗସ୍ତ ।

୧୯୩୪—କଂଗ୍ରେସରୁ ଅବସର ଗ୍ରହଣ ।

୧୯୩୯—ରାଜକୋଟ ଅନଶନ ।

୧୯୪୨—କାରାରୁଦ୍ଧ ।

୧୯୪୪—ଗାନ୍ଧି ଜିନ୍ନା ଆଲୋଚନା ।

୧୯୪୭—ପୂର୍ବ ବଙ୍ଗ ଓ କଲିକତାରେ ଶାନ୍ତି ମିଶନ୍ ।

୧୯୪୮—ଦିଲ୍ଲୀ ଉପବାସ । ଦେହ ତ୍ୟାଗ ।

---



ପ୍ରାର୍ଥନାସଭାରେ ଧ୍ୟାନମଗ୍ନ ବାପୁ ·



ଦଳିତ ଜାତିର ଦୁର୍ଦ୍ଦମ ନେତା,
ଘନ ଦୁଃଖୀର ସେ ଥିଲେ ରକ୍ଷାକର୍ତ୍ତା ।

# ମହାମାନବ ଗାନ୍ଧିଜୀ

## ଛାତ୍ର ଜୀବନ

ସୂର୍ଯ୍ୟଙ୍କର ଉଦୟ ଓ ଅସ୍ତ ଅଛି, ଅସ୍ତ ଗଲେ ଘୋର ଅନ୍ଧକାର ମାଡ଼ି ଆସେ । ମନୁଷ୍ୟ ସଂସାରର ଜଞ୍ଜାଳରୁ ଅନ୍ତର ହୋଇ ବିଶ୍ରାମ ଖୋଜେ । କିନ୍ତୁ ୧୩୫୪ ସାଲର ମାଘ କୃଷ୍ଣ ପଞ୍ଚମୀ ଦିନ (ଇଂରାଜୀ ୩୦ । ୧। ୧୯୪୮ ) ବିଶ୍ୱର ଗୋଟିଏ ମହାସୂର୍ଯ୍ୟ ଘନ କୋଳରେ ଲୁଚିକାଳି ଖେଳି ଅଛନ୍ତି । କୋଟି କୋଟି ନରନାରୀ ବିଶ୍ରାମ ଛାଡି ଅବିରତ ତାହାଙ୍କୁ ଖୋଜିବାରେ ଲାଗି ଅଛନ୍ତି । ସେହି ମହାସୂର୍ଯ୍ୟ ମହାମାନବ ବାପୁଜୀ । ହେ ନରନାରୀ ! ସେ ସୂର୍ଯ୍ୟ ଆମ ହୃଦୟରେ ଲୁଚି ଅଛନ୍ତି । ଅନ୍ତରର ବାହାରେ ଅନ୍ୟ କୌଣସି ସ୍ଥାନରେ ଲୁଚି ନାହାନ୍ତି । ଅନ୍ତର ଚିରିଦିଅ, ଦେଖିବ—ଅନ୍ଧକାର ମଧ୍ୟରେ ତାଙ୍କର ଉଜ୍ଜ୍ୱଳତମ ଶ୍ୟାମ ମୂର୍ତ୍ତି ବିରାଜିତ । ଦୁଃଖହରି ମୋହନ ବଂଶୀର ଧ୍ୱନି, ପତିତର ସେବାରେ ପତିତପାବନ ବାନା, ଲାଞ୍ଛିତ ଜାତିର ଉଦ୍ଧାର ପାଇଁ ବାମନମୂର୍ତ୍ତି ଧାରଣ ପ୍ରଭୃତି ଶତ ଶତ ଗୁଣ ଆମର ସ୍ମୃତିପଟରେ ଦାଉ ଦାଉ ଜଳୁଅଛି । ମାଟିର ଘଟ ସିନା ସେ ଛାଡି ଅଛନ୍ତି; କିନ୍ତୁ ତାହାଙ୍କର ଅବିନାଶୀ ଆତ୍ମା ଗୁଣକର୍ମ ସଙ୍ଗେ ବିଶ୍ୱ ମାନବର ଅନ୍ତର ଅଧିକାର କରି ବସିଅଛି । ଭୌତିକ ଚକ୍ଷୁରେ ଆଉ ସେ ଦେଖା ଦେବେ ନାହିଁ । କାରଣ, ଆମେ ତାହାଙ୍କୁ ଅନ୍ତରରେ ଅବାଦ୍ଧ କରି ରଖିଅଛୁ । ଅନ୍ତର ଖୋଲିବୁ, ତାଙ୍କୁ ଦେଖିବୁ ।

କରମଚାନ୍ଦ ମୋହନ ଦାସ ଗାନ୍ଧିଙ୍କ ସନ୍ତାନ ଗାନ୍ଧିଜୀ । ସେ ମନୁଷ୍ୟ ଯୋନିରୁ ; ଇଂ ୧୮୬୯ ସାଲ ଅକ୍ଟୋବର, ୨' ତାରିଖରେ ଜନ୍ମଗ୍ରହଣ କରିଥିଲେ । କିନ୍ତୁ ସେ ବୁଝିଥିଲେ—"ସର୍ବ ଶରୀର ମଧ୍ୟେ ସାର । ଦୁର୍ଲ୍ଲଭ ନର କଳେବର ।" ଏଣୁ ସେ ଠିକ୍ ଅର୍ଜୁନ ବିଳାସ ଭୋଗ କରିବା ପାଇଁ ପାଠ ପଢୁ ନ ଥିଲେ, ମନୁଷ୍ୟ ଜୀବନ ସାର୍ଥକ କରିବା ପାଇଁ ପାଠ ପଢୁଥିଲେ । ଆମେ ଯାହା ପଢୁ ତା'କୁ କାମରେ ଲଗାଉ ନାହୁଁ । ସେ ପୁସ୍ତକ ପଢି ଯାହା ଶିଖୁଥିଲେ ତଦନୁସାରେ ନିଜ ଜୀବନକୁ ଗଢୁଥିଲେ, ସତ୍ୟ ଓ ନ୍ୟାୟରେ ଜୀବନ ଅତିବାହିତ କରିବା ଶ୍ରେୟସ୍କର ମଣି ସେ ସର୍ବଦା ନ୍ୟାୟପଥ 'ଧର୍ମ' ଚାଲୁଥିଲେ । ଭଗବାନ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହି ଅଛନ୍ତି :—

"ମମ ଯୋନିର୍ମହଦ୍‌ବ୍ରହ୍ମ ତସ୍ମିନ୍ ଗର୍ଭଂ ଦଧାମ୍ୟହଂ
ସମ୍ଭବଃ ସର୍ବଭୂତାନାଂ ତତୋ ଭବତି ଭାରତ ।"

ଶ୍ରୀକୃଷ୍ଣଙ୍କ ଯୋନି ପରମ ବ୍ରହ୍ମ । ସମଗ୍ର ବିଶ୍ୱ ତାହାଙ୍କ ଯୋନିରୁ ଉତ୍ପନ୍ନ । କିପରି ? ଗୋଟିଏ ବଟ ବୀଜ ଭାଙ୍ଗି ଦେଖ । ତହିଁରେ ସୂକ୍ଷ୍ମ ଗୁଣ୍ଡ ଦେଖାଯିବ । ସେହି ଗୁଣ୍ଡ ବିକଶିତ ହୋଇ ବିଶାଳ ବଟ ବୃକ୍ଷରେ ପରିଣତ ହୁଏ, ସେପରି ଏକ ପରମ ସୂକ୍ଷ୍ମ ବ୍ରହ୍ମ ଅଛନ୍ତି, ଯହିଁରୁ ସମଗ୍ର ବିଶ୍ୱର ଉତ୍ପତ୍ତି ଘଟୁଅଛି । ବିଶାଳ ସାଗର ଅଛି; ତହିଁରେ ସାନ ବଡ ବିଭିନ୍ନ ତରଙ୍ଗ ଉଠୁଅଛି । ସାଗର ଭୌତିକ ଚକ୍ଷୁକୁ ଦେଖାଯାଏ । କିନ୍ତୁ ସାଗର ସଦୃଶ ବିଶ୍ୱବ୍ୟାପୀ ପରମ ବ୍ରହ୍ମ ଭୌତିକ ଚକ୍ଷୁକୁ ଦେଖା ନ ଯାଇ ଅନ୍ତରର ଚକ୍ଷୁକୁ ଦେଖା ଯାଆନ୍ତି । ସାଗରରୁ ଜଳକଣା ଅସି ବୃଷ୍ଟିରୂପରେ ଭୂପୃଷ୍ଠରେ ପଡେ । ଭୂପୃଷ୍ଠର କେତେ ଜଳବିନ୍ଦୁ ନଦୀକୁ ଯାଇ ସମୁଦ୍ରରେ ମିଶନ୍ତି, କେତେକ ଜଳ ଖାଲଢିଣାରେ ଜମା ରହି ପଡିଥାଏ । ସେପରି ସାଗରରୂପୀ

ପରମ ବ୍ରହ୍ମଙ୍କ ଠାରୁ ଜୀବମାନେ ଉତ୍ପନ୍ନ ହୋଇ କେତେକ ସଂସାରରେ ନାନା କ୍ଲେଶ ଭୋଗ କରନ୍ତି, କେତେକ ପରମ ବ୍ରହ୍ମରେ ଲୀନ ହୁଅନ୍ତି । "ଉଲଟା କୃଷ୍ଣପାଦେ ଲୀଭ । ମନୁଷ୍ୟ ଜନ୍ମର ଏ ଲାଭ"— ଏହି ନୀତି ଧରି ସତ୍ୟ ଓ ନ୍ୟାୟ ପଥରେ ଚାଲିଲେ ପରମ ବ୍ରହ୍ମଙ୍କୁ ଯେ କୌଣସି ବ୍ୟକ୍ତି ଉପଲବ୍ଧି କରିପାରେ । କିନ୍ତୁ ଭକ୍ତି ଗୋଟିଏ ଖଣ୍ଡିଆ କାଲିଗାଈ ନୁହେ । ଭକ୍ତିକୁ ହୃଦୟରେ ବାନ୍ଧି ରଖିବାକୁ ହେଲେ ଅନ୍ୟାନ୍ୟ ଗୁଣକର୍ମ ଲୋଡ଼ାହୁଏ, ତଥାପି ଭକ୍ତି ଜୀବନର ମୂଳ ଭିତ୍ତି । ବାଲ୍ୟକାଳର ମାତୃପିତୃ ଭକ୍ତି ବାପୁଜୀଙ୍କୁ ମହାତ୍ମାରେ ପରିଣତ କରି ପାରିଲା । ସେ ଇସ୍କୁଲରେ ପଢୁଥିବା ବେଳେ ପିତାମାତା ତାହାଙ୍କୁ ବିବାହ-ବନ୍ଧନରେ ବାନ୍ଧି ଦେଲେ । କିନ୍ତୁ ବାପୁଜୀ ମାତା-ପିତାଙ୍କ ବିଦ୍ରୋହୀ ହୋଇ ନାହାନ୍ତି । ବିବାହ ସରିଲା, ନିଜ ସ୍ତ୍ରୀଙ୍କୁ କଥା କହିବା ପାଇଁ ପ୍ରଥମେ ପ୍ରଥମେ ତାଙ୍କୁ ଲାଜ ମାଡ଼ିଲା । ପରେ କ୍ରମଶଃ ପତ୍ନୀ କୌସ୍ତୁରୀବାଈଙ୍କ ସଙ୍ଗେ ତାହାଙ୍କର ପ୍ରେମ ଗାଢ଼ ହେବାକୁ ଲାଗିଲା । ଏହି ଅନୁଭବରୁ ସେ ଏକ ଅପୂର୍ବ ଶିକ୍ଷାଲାଭ କଲେ । ବାଲ୍ୟକାଳରେ ଇନ୍ଦ୍ରିୟବାସନା ନ ଥାଏ । ପତ୍ନୀଙ୍କୁ ଖେଳ-ସଙ୍ଗିନୀ ରୂପେ ପାଇ ସେ ଆନନ୍ଦ ଅନୁଭବ କଲେ । ପରଘର ଝିଅ ମନରେ ଆନନ୍ଦ ଜନ୍ମାଇ ପାରିଲା; କାହିଁକି ? ପ୍ରତ୍ୟେକ ମନୁଷ୍ୟ ଏକ ପରମାତ୍ମାର ସନ୍ତାନ । ପରିବାର ମଧ୍ୟରେ ରହି ଭାଇ ଭଉଣୀ ମଧ୍ୟରେ ସ୍ନେହ ଆପେ ଆପେ ଜାତ ହୁଏ, ସେପରି ଯେ କୌଣସି ବ୍ୟକ୍ତିର ସଂସ୍ରବରେ ଆସିଲେ ତାଁହା ପ୍ରତି ସ୍ନେହଜାତ ହେବା ସ୍ୱାଭାବିକ । ସ୍ନେହ ମନୁଷ୍ୟକୁ ଯଥାର୍ଥ ସୁଖ ଦିଏ । ସ୍ନେହ ଚରିତ୍ର ଗଠନର ଏକ କାରଣ । ସ୍ନେହ ଅଭାବରୁ ଅନେକଙ୍କର ଦାମ୍ପତ୍ୟ-ଜୀବନ ବିଷମୟ ହୁଏ । କିନ୍ତୁ ଏ ସ୍ନେହର ପ୍ରଭାବରେ ମହାତ୍ମାଜୀ ତେଅଶ ଏକପତ୍ନୀକ ଓ ଚରିତ୍ର ଦୃଢ଼ତା ସହିତ ପାଳନ କରିଥିଲେ, କସ୍ତୁରୀବା

ତତୋଧିକ ପତିବ୍ରତା ହୋଇଥିଲେ । ଦାମ୍ପତ୍ୟ-ଜୀବନରେ ] ସୁଖ ଦୁଃଖର କାରଣ ପ୍ରାଞ୍ଜଳ ଭାବରେ ଉପଲବ୍ଧି କରାଯାଏ, ଏବଂ ଚୈତନ୍ୟ ମହାପ୍ରଭୁ ମାଧୁର୍ଯ୍ୟ-ଭକ୍ତିରେ ଶ୍ରୀକୃଷ୍ଣଙ୍କୁ ଆରାଧନା କରିବା ପାଇଁ ଉପଦେଶ ଦେଇ ଅଛନ୍ତି । କୌଣସି ଯୁବତୀର ପର ପୁରୁଷ ପ୍ରତି ଯେତେବେଳେ ପ୍ରଗାଢ଼ ଅନୁରାଗ ଜନ୍ମେ, ସେତେବେଳେ ଗଞ୍ଜଣା-ଅନାଦର; କଣ୍ଟା ବାଣ; ସମାଜ ବନ୍ଧନ ପ୍ରଭୃତ କଷ୍ଟ ସେ ମାନେ ନାହିଁ । ଅନୁରାଗ ତାହା ମନରେ ଥିବାରୁ ସମସ୍ତ କ୍ଳେଶ ସେ ପାଶୋରି ପାରେ । ଭଗବାନଙ୍କ ଠାରେ ସେପରି ଅନୁରାଗ ଯେ ରଖି ପାରିବ ତାହାଠାରେ ସଂସାରର କ୍ଳେଶ ନିଶ୍ଚୟ ହାରି ମାନିବ । ମନର ମୂଳରେ ଏ ଜଗତ । ଖରାରେ କାମ କରିବାକୁ ଆମର ଅଭ୍ୟାସ ନାହିଁ । ଆମେ ଖରାରେ ବାଟ ଚାଲିବା ପାଇଁ ମଧ୍ୟ ଡରୁଁ । ମାଟିଆ-ଜାତକୁ ଗ୍ରୀଷ୍ମ-କାଳର ପ୍ରଖର ଖରାରେ କାମ କରିବାକୁ ସୁଖ ଲାଗେ । ଚିତ୍ତରେ ବିଚାରି କରି ପାରିଲେ ସୁଖ ଦୁଃଖ ମଧ୍ୟରେ ଭେଦ ରହେ ନାହିଁ । କିନ୍ତୁ ସଂସାରର ଜଞ୍ଜାଳରେ ରହି ଏତେ କଥା ବିଚାର କରିବାକୁ ବେଳ ନାହିଁ; ପୁଣି ବିଚାର କରିବାକୁ ସମସ୍ତଙ୍କର ତ ଶକ୍ତି ନ ଥାଏ । ଏଣୁ ଈଶ୍ୱରଙ୍କଠାରେ ଅନୁରାଗ ଓ ଭକ୍ତି ରଖି ସତ୍ୟ ଓ ନ୍ୟାୟର ପଥରେ ଚାଲୁଥିଲେ ଦୁଃଖ ଆପେ ଆପେ ଅନ୍ତର ହୁଏ । ସେଥିପାଇଁ ଅର୍ଜୁନ କହିଲେ :—

"ଜାନାମି ଧର୍ମଂ ନଚମେ ପ୍ରବୃତ୍ତିଃ ଜାନାମ୍ୟଧର୍ମଂ ନ ଚ ମେ ନିବୃତ୍ତିଃ ।
ତ୍ୱୟା ହୃଷୀକେଶ ହୃଦିସ୍ଥିତେନ ଯଥା ନିଯୁକ୍ତୋସ୍ମି ତଥା କରୋମି ।।"

ଧର୍ମ ମନୁଷ୍ୟ ଜାଣେ, କିନ୍ତୁ ତାହା ଆଚରଣ କରିବାକୁ ମନ ବଳେ ନାହିଁ । ଅଧର୍ମ କଅଣ; ମନୁଷ୍ୟ ଜାଣେ । କିନ୍ତୁ ତାହା ଛାଡ଼ିବାକୁ ମନ ବଳେ ନାହିଁ । ଭଗବାନ ହୃଦୟରେ ଅଛନ୍ତି; ସେ

ଯେଉଁ କାମରେ ଲଗାନ୍ତି ସେହି କାମ ଆମେ କରୁ—ଏପରି ଦୃଢ଼ ବିଶ୍ୱାସ ଜନ୍ମିଲେ ପ୍ରକୃତ ସୁଖ ମିଳେ । କିନ୍ତୁ ଏ ବିଶ୍ୱାସ ସମସ୍ତଙ୍କର ଜନ୍ମେ ନାହିଁ । "ଏ ଆତ୍ମା ଅହଙ୍କାରେ ବନ୍ଦୀ । ଅଦୃଷ୍ଟବଶ ନିରବଧି ।" 'ମୁଁ' ପଦାର୍ଥ ଅନ୍ତରରେ ଥିଲେ ଈଶ୍ୱର କାମ କରିଉ ଅଛନ୍ତି । ଏପରି ଦୃଢ଼ ବିଶ୍ୱାସ ଏ ହୃଦୟରେ ଜନ୍ମେ ନାହିଁ । ଯେ କ୍ଷୁଧାରେ ଆତୁର ହୁଏ ନାହିଁ, ସନ୍ତାନ-ବିୟୋଗରେ ଅଧୀର ହୁଏ ନାହିଁ, ତାହାର ହୃଦୟରେ ଈଶ୍ୱରଙ୍କର ପ୍ରକାଶ ହୁଏ ।୧୯୦୪ ସାଲରେ ମହାତ୍ମାଜୀଙ୍କର ପତ୍ନୀ-ବିୟୋଗ ହେଲା । କିନ୍ତୁ ତିଳେମାତ୍ର ଶୋକ ତାହାଙ୍କୁ ବିଚଳିତ କରି ପାରି ନାହିଁ; ତାହାଙ୍କ ହୃଦୟରେ ଈଶ୍ୱରଙ୍କର ଯଥାର୍ଥ ପ୍ରକାଶ ଘଟିଥିଲା । ଏଣୁ ଯନ୍ତ୍ରମୂଳକ କର୍ମପରି ତାହାଙ୍କର ସମସ୍ତ କର୍ମ କେବଳ ଧର୍ମମୂଳକ ହେଉଥିଲା । 'ମୁଁ ଖାଇବି, ମୁଁ ରହିବି' ପ୍ରଭୃତି ଚିନ୍ତା ତ୍ୟାଗକରି ଏକନିଷ୍ଠ ଈଶ୍ୱର ଭକ୍ତ ଆସିଲେ ହୃଦୟରେ ଈଶ୍ୱରଙ୍କର ପ୍ରକାଶ ହୁଏ । ଏପରି ଭକ୍ତି କିପରି ଆସେ ?

"ଶ୍ରଦ୍ଧୟା ପରୟା ତପ୍ତଃ ତପସ୍ତତ୍ ତ୍ରିବିଧଂ ନରୈଃ ।
ଅଫଳାକାଙ୍କ୍ଷିଭିର୍ଯୁକ୍ତୈଃ ସାତ୍ତ୍ୱିକଂ ପରିଚକ୍ଷ୍ୟତେ ॥"

ତାହାର ଅର୍ଥ କାୟକ୍ଳେଶ ସହି ସାଧୁକର୍ମ କରିବା । ଉତ୍କୃଷ୍ଟ ଶ୍ରଦ୍ଧା ସହକାରେ ଜଗତରେ ତିନି ପ୍ରକାରେ ତପସ୍ୟା ବା କର୍ମ କରିଯାଇ ପାରେ । ନିଜେ ସୁଖରେ ରହିବା ପାଇଁ ଅନେକ ଲୋକ ଜଗତରେ ଚୋରି ଡକାୟତି କର୍ମ କରନ୍ତି । ଏହା ନିନ୍ଦନୀୟ ତାମସିକ କର୍ମ । ଜୀବନ ନିର୍ବାହ ପାଇଁ ସମାଜ ଚଳିତ ବୃତ୍ତି ଅବଲମ୍ବନ କରି ଯେଉଁ କର୍ମ କରାଯାଏ ତାହା ରାଜସିକ । ଚଷା ଚାଷ କରେ, ତେଲି ତେଲ ପ୍ରସ୍ତୁତ କରେ—ଏ ସମସ୍ତ ରାଜସିକ ବୃତ୍ତି ସମାଜ ଅନୁମୋଦନ କରେ । କୌଣସି ଫଳ-କାମନା ନ କରି ଯେଉଁ କାମ କରାଯାଏ,

ତାହା ସାତ୍ତ୍ୱିକ । ନିଜ ପାଇଁ କାମ କଲେ ଫଳରେ କାମନା ଅବଶ୍ୟ ରହିବ । ପର ପାଇଁ କାମ କଲେ ଫଳର ଅଭିଳାଷ ଆଦୌ ଜନ୍ମିବ ନାହିଁ । ସାତ୍ତ୍ୱିକ ଗୁଣର ବିକାଶ ଘଟିବ ଓ ହୃଦୟରେ ଈଶ୍ୱର ପ୍ରକାଶ ପାଇବେ । କର୍ମ ନ କଲେ ପରନିନ୍ଦା; ପରଚ୍ଛିଦ୍ର ପ୍ରଭୃତି ହୃଦୟ ଅଧିକାର କରି ସାତ୍ତ୍ୱିକ ଗୁଣର ବିକାଶ ପଥରେ ବାଧା ଜନ୍ମାଇବ । ସାଧୁ କର୍ମ କଲେ ଅହଙ୍କାର ଦୂର ହୋଇ ଈଶ୍ୱର ବିଶ୍ୱାସ ମଧ୍ୟ ଦେଲୁଁ ବେଳ ଦୃଢ଼ତର ହେବ । 'ମୁଁ କରୁଚି'—ଏପରି ବିଶ୍ୱାସ କର୍ମୀ ଲୋକଙ୍କର ଅନେକ ସମୟରେ ଦୂର ହୋଇଥାଏ । କାଠ କାଟିବା ପାଇଁ ବଣକୁ ଘରୁ ବାହାରିବା ବେଳେ ଝୁଣ୍ଟି ପଡ଼ିଲେ 'ମୁଁ କରୁଚି' ବିଶ୍ୱାସ ରହେ ନାହିଁ । ସେତେବେଳେ ଈଶ୍ୱର ଅଛନ୍ତି ବୋଲି ବିଶ୍ୱାସ ଜନ୍ମେ । କିନ୍ତୁ ସାଧାରଣ ଲୋକ ପର ମୁହୂର୍ତ୍ତରେ ପାଶୋରି ଦିଏ । ସାତ୍ତ୍ୱିକ ଗୁଣର ବିକାଶ ଯାହାଠାରେ ଘଟିଥାଏ ସେ ପାଶୋରି ପାରେ ନାହିଁ । ସମସ୍ତଙ୍କ ହୃଦୟରେ ସାତ୍ତ୍ୱିକ ଗୁଣ ଅଛି, ନରଘାତକ ହତ୍ୟା କରିବାକୁ ଉଦ୍ୟତ ହେବାବେଳେ ତାହାର ସାତ୍ତ୍ୱିକ ଗୁଣ ତାହାକୁ ବାରଣ କରୁଥାଏ । ମାତ୍ର ପ୍ରବଳ ତାମସିକ ଗୁଣ ସେହି ମନାକୁ ଶୁଣେ ନାହିଁ । ମାନବ ସମାଜରେ ପରସ୍ପର ଆତ୍ମା ସମ୍ବନ୍ଧ ହୋଇଥିବାରୁ ଜଣେ ଅନ୍ୟକୁ ହତ୍ୟା କରିବା ପାଇଁ ବିବେକ ପ୍ରବର୍ତ୍ତାଏ ନାହିଁ । ଆତ୍ମାକୁ ଚିହ୍ନି ପାରିଲେ ମନୁଷ୍ୟ ସର୍ବଜ୍ଞ ହୋଇପାରେ । ଆତ୍ମାକୁ ଚିହ୍ନିବା ପାଇଁ ଭକ୍ତି, ପରୋପକାର ପ୍ରଭୃତି ଲୋଡ଼ା ହୁଏ । ମହାତ୍ମାଜୀ ଗୀତା ପ୍ରଭୃତି ଅନେକ ଧର୍ମ-ଶାସ୍ତ୍ର ପଢ଼ି ପାରମୀତ ମାନି ଚଳୁଥିଲେ । କେବଳ ଅର୍ଥ ବୁଝିବା ପାଇଁ ସେ ପଢୁ ନ ଥିଲେ । ଚରିତ୍ର ବିଶୁଦ୍ଧ ନୋହିଲେ ଗୀତା-ଉପନିଷଦ୍ ପ୍ରଭୃତିର ମର୍ମ ଗ୍ରହଣ କରିବା ମଧ୍ୟ କଠିନ । ସେ ପିଲାଦିନୁ ଅଳ୍ପ ମୂଲ୍ୟର ରାମଚରିତ ପ୍ରଭୃତି କିଣି ପଢୁଥିଲେ ଓ ରାମଙ୍କ ପରି ଆଦର୍ଶ ଜୀବନ ଯାପନ

କରିବା ପାଇଁ ସତତ ତତ୍ପର ଥିଲେ । ଏଣୁ ତାହାଙ୍କ ଅନ୍ତରରେ ପରମାତ୍ମାଙ୍କର ଆବିର୍ଭାବ ଘଟିଥିଲା । ତାହାଙ୍କର ସମସ୍ତ ଗୁଣକର୍ମ ଆମର ହୃଦୟରେ ନିହିତ ଅଛି । ମଧ୍ୟାହ୍ନରେ ନିଜର ପ୍ରଖର କିରଣରେ ସୂର୍ଯ୍ୟ ନିଜକୁ ଆବୃତ କରି ମନୁଷ୍ୟର ଚକ୍ଷୁକୁ ସ୍ପଷ୍ଟରୂପେ ଦେଖା ଦିଅନ୍ତି ନାହିଁ । ତାହାଙ୍କର ଆତ୍ମା ଯେତେଦିନ ପର୍ଯ୍ୟନ୍ତ ମାଟିର ଘଟରେ ଥିଲା ସେତେଦିନ ପର୍ଯ୍ୟନ୍ତ ଆମେ ତାହାଙ୍କୁ ଚିହ୍ନି ପାରୁ ନ ଥିଲୁ । ମାଟିର ଘଟ ସେ ଛାଡ଼ି ଚାଲି ଯାଇ ଅଛନ୍ତି । ଆଉ ଆବରଣ ନାହିଁ । ତାହାଙ୍କ ଅନ୍ତରର ରୂପ ଏଥର ସମଗ୍ର ବିଶ୍ୱ ଦେଖି ପାରୁଅଛି ।

ମହାତ୍ମାଜୀ ବିବାହ କଲେ । ନିଜର ପତ୍ନୀ କପରି ପତିବ୍ରତା ହେବେ, ତାହା ସେ ଚାହିଁଲେ । ଏଣୁ ତାଙ୍କ ବିନାନୁମତିରେ ଅନ୍ୟତ୍ର ଯିବା ପାଇଁ ସ୍ତ୍ରୀଙ୍କୁ ନିଷେଧ କଲେ । କିନ୍ତୁ କସ୍ତୁରିବାଈ ସେ କଟକଣା ମାନନ୍ତି ନାହିଁ । ବାପୁଜୀ ଯେତିକି ଦବାନ୍ତି କସ୍ତୁରିବାଈ ସେତିକି ଅମାନିଆ ଆଚରଣ କରନ୍ତି । ଦୁହିଙ୍କ ମଧ୍ୟରେ କଥାବାର୍ତ୍ତା ବନ୍ଦ ହୋଇଯାଏ, ପୁଣି କିଛିଦିନ ଉତ୍ତାରେ ଉଭୟଙ୍କ ମଧ୍ୟରେ ମଧୁର ଭାବ ଜାଗି ଉଠେ । ଏ ତ ସେହି ବୃନ୍ଦାବନ ଲୀଳା । ଶୀତ ନ ଥିଲେ ଖରାର ଗୁଣ କିଏ ବୁଝନ୍ତା ? ସଂସାରରେ ଆଲୁଅ ଅନ୍ଧାର ପରି ପ୍ରୀତି-ବିବାଦ ଅଛି । ବିବାଦ ଉତ୍ତାରୁ ପୁଣି ଯେଉଁ ପ୍ରୀତି ଜନ୍ମେ, ତାହା ମଧୁରତର ହୁଏ । କିନ୍ତୁ ବିବାଦ ଉତ୍ୟକ୍ତ ହେଲେ ତାହା ବିଷମୟ ହୁଏ । ଉତ୍ୟକ୍ତ ହୋଇ ନ ଥିଲା କାହିଁକି ? କସ୍ତୁରିବାଈଙ୍କର ପତିଭକ୍ତି ଯୋଗୁଁ ପତି ମନା କଲା ବେଳେ ସେ ଯୁକ୍ତିତର୍କ କରି ପତିଙ୍କ ମନା ମାନିବେ ନାହିଁ ବୋଲି କହୁ ନ ଥିଲେ । ଅଥଚ ଦେବ ମନ୍ଦିର ପ୍ରଭୃତିକୁ ଯିବା ପାଇଁ ସୁଯୋଗ ଆସିଲେ ସେ

ବିନାନୁମତିରେ ଚାଲି ଯାଆନ୍ତି । ଯଥାର୍ଥ ସ୍ୱାଧୀନତା ଏହାକୁ କହନ୍ତି । ଅମ୍ଭର କଲ୍ୟାଣ ନିମନ୍ତେ ମାନବ ରଚିତ ଆଇନ ଲଙ୍ଘନ କରିବା ବିଧେୟ ହୋଇ ତାହାଙ୍କ ପତ୍ନୀଙ୍କ ସ୍ୱଭାବରୁ ବାପୁଜୀ ଶିଖିଥିଲେ । ଯେ ଦୋଷୀ ସେ ଦୋଷର କ୍ଷାଳନ ପାଇଁ ନାନା ଯୁକ୍ତିତର୍କ କରେ । କସ୍ତୁରିବାଇଙ୍କର ଚରିତ୍ରରେ କଳଙ୍କ ନ ଥିଲା । ଏଣୁ ତାହା ପୋଛିବା ପାଇଁ ସେ ମନ ବଳାଉ ନ ଥିଲେ । ଏଥିରୁ ବାପୁଜୀଙ୍କୁ ଯେଉଁ ଶିକ୍ଷା ମିଳିଥିଲା ତାହାକୁ ସେ ଭବିଷ୍ୟତରେ ରାଜନୀତିରେ ପ୍ରୟୋଗ କରିଥିଲେ । ଜନସାଧାରଣଙ୍କ ହିତ ପାଇଁ ବ୍ରିଟିଶ ସରକାରଙ୍କ ଆଇନ ନ ମାନିବା ଓ ଅଦାଲତରେ ଆଇନ-ଅମାନ୍ୟକାରୀ ଆତ୍ମପକ୍ଷ ସମର୍ଥନ ନ କରିବ ପାଇଁ ଗାନ୍ଧିଜୀ ଯେଉଁ ନୀତି ଗଢିଥିଲେ ତାହା ତାହାଙ୍କ ପାରିବାରିକ ଜୀବନର ସନ୍ଧାନ ନୁହେ କି ?

ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ପଢିବା ବେଳେ ବାପୁଜୀ ଓ ତାଙ୍କର ବଡ ଭାଇଙ୍କ ବିବାହ ଅନୁଷ୍ଠିତ ହୋଇଥିଲା । ବିବାହ ବଡ଼ ଭାଇଙ୍କ ଶିକ୍ଷାରେ ବାଧା ଜନ୍ମାଇଲା । ସେ ବିଦ୍ୟାଳୟ ଛାଡ଼ିଲେ, କିନ୍ତୁ ବାପୁଜୀଙ୍କ ଚିତ୍ତକୁ ବିଚଳିତ କରି ପାରିଲା ନାହିଁ । କାହିଁକି ? ନିର୍ଲିପ୍ତ ଭାବରେ ଜୀବନ ଅତିବାହିତ କରିବା ତାହାଙ୍କର ସ୍ୱଭାବସିଦ୍ଧ ହୋଇଥିଲା । ସ୍ତ୍ରୀ ସଙ୍ଗରେ ଥିବାବେଳେ ସେ ଇନ୍ଦ୍ରିୟାସକ୍ତ ହେଉଥିଲେ । ଅନ୍ୟବେଳେ ଇନ୍ଦ୍ରିୟାସକ୍ତି ତାହାଙ୍କ ଚିତ୍ତରେ ସ୍ଥାନ ପାଉ ନ ଥିଲା । ଏଣୁ ସେ ଭଲ ପଢୁଥିଲେ, ପୁରସ୍କାର ପାଇଥିଲେ ଓ ବୃତ୍ତି ପାଇଥିଲେ । ପୁରସ୍କାର ବା ବୃତ୍ତି ପାଇଲେ ତାହାଙ୍କ ହୃଦୟ ଆନନ୍ଦରେ ଉତ୍ଫୁଲ୍ଲ ନୋହି ଆଶ୍ଚର୍ଯ୍ୟରେ ଅଭିଭୂତ ହୋଇ ପଡୁଥିଲା । ଯାହାର ଅହଙ୍କାର ଥାଏ କାର୍ଯ୍ୟ ସିଦ୍ଧିରେ ସେ ଆନନ୍ଦରେ ନାଚେ, ବାପୁଜୀଙ୍କର ଅହଙ୍କାର ନ ଥିଲା । ଉତ୍ଫୁଲ୍ଲ ହେବେ କାହିଁକି ?



କସ୍ତୁରବାଙ୍କ ସାଙ୍ଗରେ ବାରିଷ୍ଟର ବେଶରେ ଓ ସାଧାରଣ ବେଶରେ

"ମନ ପ୍ରସାଦଃ ସୌମ୍ୟତ୍ୱଂ ମୌନମାତ୍ମ ବିନିଗ୍ରହଃ । ଭାବସଂଶୁଦ୍ଧି-
ରିତ୍ୟେତତ୍ତପୋ ମାନସମୁଚ୍ୟତେ ॥"—ମନର ପ୍ରସନ୍ନତା, ସୌମ୍ୟତା, ମୌନ ଓ ଆତ୍ମସଂଯମ ଯାହାର ଥାଏ ସେ ଇଷ୍ଟକର ଘଟଣା ଘଟିଲେ ଉତ୍ଫୁଲ୍ଲ ଅଥବା ଅନିଷ୍ଟକର ଘଟଣା ଘଟିଲେ ଶୋକରେ ଅଧୀର ହୁଏ ନାହିଁ । କିନ୍ତୁ ଅନ୍ୟାୟର ବିରୋଧରେ ସେ ଚିର ବିଦ୍ରୋହୀ ଥିଲେ । ଧର୍ମିଷ୍ଠ ଓ ନ୍ୟାୟନିଷ୍ଠ ବ୍ୟକ୍ତି ପକ୍ଷରେ ଏହା ସ୍ୱାଭାବିକ । କୌଣସି ଶିକ୍ଷକ ଗାଳି ଦେଲେ ସେ ସହି ପାରୁ ନ ଥିଲେ । ମାଡ ଖାଇବାଟା ତାଙ୍କୁ ଯେତେ କାନ୍ଦୁ ନ ଥିଲା, ଦୋଷ ଘଟିଥିବାର ଜାଣି ପାରିଲେ ତାହାଙ୍କୁ ଅଧିକ କାନ୍ଦୁଥିଲା । କେହି ଦୋଷ ଦେଖାଇଲେ ତାହାକୁ ଯେ ସଂଶୋଧନ କରେ ସଂସାରରେ ସେ ଏକା ବଡ଼ ଲୋକ ହୁଏ ।

**Great men hear of their faults and mend their ways).**

•

ସଂସର୍ଗର ପ୍ରଭାବରେ ମନୁଷ୍ୟର ଚରିତ୍ର ଗଠିତ ହୋଇ ଯାଏ । ବାପୁଜୀଙ୍କ ପକ୍ଷରେ ସର୍ବଦା କେବଳ ସାଧୁ-ସଂସର୍ଗ ଥିଲା, ଏପରି ନୁହେ । ଇଂରେଜୀ ଶିକ୍ଷାର ପ୍ରଭାବରେ ଦଳେ ସମାଜ-ସଂସ୍କାରକ ଏ ଦେଶରେ ବାହାରି ଥିଲେ । ହୃଦୟ ମଧ୍ୟରେ କି ମହତ୍ ଗୁଣ ଥିବାରୁ ଇଂରେଜ ଜାତି ବଡ଼ ହୋଇଥିଲେ ତାହା ସେମାନେ ବୁଝି ନ ପାରି ଇଂରେଜ ଜାତି ପରି ମଦ୍ୟ-ମାଂସ ଖାଇଲେ ଦେଶ ସଭ୍ୟ ହୋଇ ପାରିବ ବୋଲି ସେହି ସଂସ୍କାରକମାନଙ୍କ ମନରେ ଧାରଣା ଜନ୍ମିଥିଲା । ଉକ୍ତ ସଂସ୍କାରକ ଦଳରୁ ଜଣେ ବାପୁଜୀଙ୍କ ବନ୍ଧୁ ହୋଇ ପଡ଼ିଲେ । ବାପୁଜୀ ବନ୍ଧୁଙ୍କୁ ସୁଧାରିବା ପାଇଁ ଆଶା ପୋଷିଥିଲେ । କିନ୍ତୁ ନିଜେ କାଳର ସ୍ରୋତରେ ଭାସିବା ଦଶା ଉପସ୍ଥିତ ହେଲା । ପିତା-ମାତାଙ୍କ ଅଜଣାରେ ପାଞ୍ଚଥର ଏକ ବର୍ଷ ମଧ୍ୟରେ ସେ ବନ୍ଧୁଙ୍କ ପାଲରେ ପଡ଼ିଥିଲେ । କିନ୍ତୁ ଉକ୍ତ କାଳ ମଧ୍ୟରେ ନିଜର ସ୍ୱଭାବକୁ

ମନ ମଧ୍ୟରେ ସେ ବାଣ୍ଟୁଥିଲେ । ତାହାଙ୍କର କୁଳ ବୈଷ୍ଣବ ଧର୍ମାବଲମ୍ବୀ । ମଦମାଂସର ସୀମା ମାଡ଼ିବେ ନାହିଁ, ପୁଣି ସମସ୍ତଙ୍କ ଅଜାଣାରେ କୌଣସି କାର୍ଯ୍ୟ କରିବା କାପୁରୁଷର ଲକ୍ଷଣ । ଏହିପରି ନାନା କଥା ଚିନ୍ତା କରି ସମାଜ ସହିତ ବ୍ୟବହାର ଛାଡ଼ି ଦେଇଥିଲେ । ଯୌବନକାଳ ଉଚ୍ଛୃଙ୍ଖଳ । ପିଲାଦିନୁ ହୃଦୟରେ ଭକ୍ତିର ବୀଜ ନ ଥିଲେ ସେ କାଳ ସ୍ରୋତରେ ଭାସି ଯାଇ ଥାଆନ୍ତେ । ମହାମାନବିକତା ତାହାଙ୍କ ଠାରେ ଫୁଟି ନ ଥାଆନ୍ତା । ଧର୍ମର ବିପ୍ଲବ ଭିତରରେ ଚିରକାଳ ଲାଗି ରହିଥିଲା । ପରିଶେଷରେ ଭକ୍ତି ସବୁ ଧର୍ମର ସାର ବୋଲି ଅବଧାରିତ ହେବାରୁ ସମସ୍ତ ବିପ୍ଲବ ଶାନ୍ତ ହେଲା । ଭକ୍ତି ଥିଲେ ଯେ କୌଣସି ଧର୍ମ ମନୁଷ୍ୟ ପକ୍ଷରେ କଲ୍ୟାଣକର । "ଆକାଶାତ୍ ପତିତଂ ତୋୟଂ ଯଥା ଗଚ୍ଛତି ସାଗରଂ; ସର୍ବ ଦେବ ନମସ୍କାରେ କେଶବଂ ପ୍ରତିଗଚ୍ଛତି ।" ବର୍ଷା ହେଲେ ଆକାଶରୁ କେତେ ସ୍ଥାନରେ କେତେ ପାଣି ପଡ଼େ । କିନ୍ତୁ ସବୁ ବୃଷ୍ଟି-ବିନ୍ଦୁ ସାଗରର ଗର୍ଭରେ ଯାଇ ମିଳିତ ହୁଏ । ସେପରି ଯେ କୌଣସି ଧର୍ମ ଆଶ୍ରୟ କରି ସେହି ଧର୍ମର ଦେବତାଙ୍କୁ ଭକ୍ତି ସହକାରେ ପ୍ରାର୍ଥନା କଲେ ସେହି ପ୍ରାର୍ଥନା ଏକ ଅଦ୍ୱିତୀୟ ଈଶ୍ୱରଙ୍କ ଠାରେ ଯାଇ ପହଞ୍ଚିବ । ଏ ଜ୍ଞାନ ସେତେବେଳେ ଅବଶ୍ୟ ବାପୁଜୀଙ୍କର ନ ଥିଲା । କିନ୍ତୁ ପିତୃମାତୃ-ଭକ୍ତି ସେତେବେଳେ ତାହାଙ୍କର କର୍ଣ୍ଣଧାର ହୋଇଥିଲା । ବୁଦ୍ଧି ଯୌବନରେ ଅପରିପକ୍ୱ, ଇନ୍ଦ୍ରିୟର ତାଡ଼ନା ମଧ୍ୟ ଅଦମ୍ୟ । ଯଦି ହୃଦୟରେ ଭକ୍ତି ନ ଥାଏ ତେବେ ମନୁଷ୍ୟ ଅନାୟାସରେ ବାଟ ବଣା ହୁଏ । କେବଳ ଭକ୍ତିର ସାହାଯ୍ୟରେ ବାପୁଜୀ ଉଦ୍ଧାର ପାଇଲେ । ସଙ୍ଗେ ସଙ୍ଗେ ତହିଁରୁ ଶିକ୍ଷା ଲାଭ କଲେ । କାହାରି ସଙ୍ଗରେ ଘନିଷ୍ଠ ବନ୍ଧୁ ହେଲେ ତାହାର ଦୋଷକୁ ଆମେ ଯେତେ ଶୀଘ୍ର ଗ୍ରହଣ କରୁ ତାହାର ଗୁଣକୁ ସେତେ ଶୀଘ୍ର ଶିଖିବ

ପାଇଁ ଅମେ ଉଦ୍ୟମ କରୁ ନାହୁଁ, ଏଣୁ ଅମ୍ଭାରେ ପରମେଶ୍ୱରଙ୍କୁ ବନ୍ଧୁ କରି ରଖିବାକୁ ହେଲେ ଅରଣ୍ୟରେ ଏକାକୀ ରହିବା ଉଚିତ ଅଥବା ବିଶ୍ୱ ମାନବ ପ୍ରତି ମିତ୍ରତା କରିବା ଉଚିତ। କିନ୍ତୁ କୌଣସି ଜଣେ ନିର୍ଦ୍ଦିଷ୍ଟ ବ୍ୟକ୍ତି ସଙ୍ଗେ ଘନିଷ୍ଠ ବନ୍ଧୁତା କରିବା ଉଚିତ ନୁହେ। ଏହିପରି ଅନ୍ତର୍ଯାମୀ ପୁରୁଷଙ୍କୁ ସେ ଅନ୍ତରରେ ଚିହ୍ନି ପାରିଥିଲେ— "ସକଳ ଭୂତେ ମୁଁ ବସଇ। ଅନ୍ତରେ ଅନ୍ତର୍ଯାମୀ ହୋଇ"।

ବାପୁଜୀଙ୍କ ପିତୃ-ବିୟୋଗ ଉତ୍ତାରୁ ତାହାଙ୍କୁ କଲେଜରେ ପଢିବାକୁ ହେଲା। କିନ୍ତୁ ବି: ଏ: ପାସ୍ କରିବା ପର୍ଯ୍ୟନ୍ତ ସେ କଲେଜରେ ପଢି ନାହାନ୍ତି। ପ୍ରଥମ ସନ୍ତାନ ଜନ୍ମର ଅଳ୍ପ କେତେ ମାସ ଉତ୍ତାରେ ତାହାଙ୍କୁ ବିଲାତ ଯିବାକୁ ପଡ଼ିଲା। ସେତେବେଳେ ବିଲାତ ଯିବା ଲୋକ ଜାତି ବାସନ୍ଦ ହେଉଥିଲା, ଜାତି ଭାଇମାନେ ରୋକିଲେ। କିନ୍ତୁ ବାପୁଜୀ ତାଙ୍କ ମନା ଶୁଣିଲେ ନାହିଁ। ତାଙ୍କ ମା'ଙ୍କଠାରୁ ଅନୁମତି ପାଇ ନ ଥିଲେ ସେ ବିଲାତ ଯାଇପାରି ଥାଆନ୍ତେ କି ନାହିଁ, କହି ହେବ ନାହିଁ। ମା'ଙ୍କୁ ରାଜି କରାଇବା ପାଇଁ ବାପୁଜୀଙ୍କର ଯେଉଁ ଉଦ୍ୟମ ତାହା ତାହାଙ୍କ ମାତୃଭକ୍ତିର ନିଦର୍ଶନ। ମଦମାଂସ ଖାଇବେ ନାହିଁ ବୋଲି ଶପଥ କରିବାରୁ ମାଆ ତାଙ୍କୁ ଅନୁମତି ଦେଇଥିଲେ। ଇଂରାଜୀ ୧୮୮୮ ସାଲ ସେପ୍ଟେମ୍ବର ୪ ତାରିଖ ଦିନ ବମ୍ବେଇ ଠାରୁ ସେ ବିଲାତ ଯାତ୍ରା କରିଥିଲେ। ବିଲାତରେ ନିଜ ଶପଥକୁ ଅକ୍ଷରେ ଅକ୍ଷରେ ପାଳିଥିଲେ। ନିଜର ସତ୍ୟ ରକ୍ଷା କରିବା ପାଇଁ ତାହାଙ୍କର ଯେଉଁ ଯତ୍ନ ତାହା ରାମଚରିତ ପାଠର ପ୍ରଭାବରେ ଘଟିଥିଲା। କୌଣସି ପୁସ୍ତକ ପଢିବା ବେଳେ ଯେଉଁ କଥା ଜାଣିଲେ ଚିତ୍ତ ପ୍ରସାଦ-ପୁଣ୍ୟରେ ଅଭିଭୂତ ହୁଏ ସେହି କଥା ଅନୁସାରେ ଜୀବନ ଅତିବାହିତ କରିବା ପାଇଁ ଉଦ୍ୟମ କଲେ

ଯଥାର୍ଥ ମାନବିକତାର ବିକାଶ ଘଟେ । କଥା ସହିତ କାର୍ଯ୍ୟର ସାମଞ୍ଜସ୍ୟ ସର୍ବଦା ରହିବା ଉଚିତ । ବାପୁଜୀ ବିଲାତରେ ଥିବା ବେଳେ ତାଙ୍କର ମା ପାଖରେ ନ ଥିଲେ । ସେ ମଦମାଂସ ଖାଇଥିଲେ ମା ଜାଣିପାରି ନ ଥାଆନ୍ତେ । ତାଙ୍କର କିଛି କ୍ଷତି ଘଟି ନ ଥାଆନ୍ତା । କିନ୍ତୁ ସତ୍ୟ ରକ୍ଷା କରିବା ସାର ଧର୍ମ ବୋଲି ବିଶ୍ୱାସ କରୁଥିବାରୁ ସେ ସତ୍ୟ-ଭ୍ରଷ୍ଟ ହୋଇ ନ ଥିଲେ ।

ବିଲାତରେ ରହି ଆଇନ ବହି ପଢିବା ସଙ୍ଗେ ସଙ୍ଗେ ବାପୁଜୀ ଅନ୍ୟ ବହିମାନ ମଧ୍ୟ ପଢୁ ଥାଆନ୍ତି । ଯାହା ପଢନ୍ତି ତାହା କୁ ପରମାଣରେ ସତ୍ୟ ତାହା ମନ ମଧ୍ୟରେ ସେ ସର୍ବଦା ବାଣ୍ଟୁ ଥାଆନ୍ତି । ଖାଦ୍ୟ-ବସ୍ତୁର ସମ୍ବନ୍ଧରେ ସେ ଅନେକ ବହି ପଢିଥିଲେ । ସୋଲ୍ଟଙ୍କ ବହି ପଢି ନିରାମିଷ ଅନ୍ନ ଆହାର କରିବା ଶ୍ରେୟସ୍କର ବୋଲି ସେ ମଣିଥିଲେ । ହାୱାର୍ଡ ଉଇଲିୟମଙ୍କ 'ଆହାର ନୀତି' ନାମକ ବହିରେ ପୃଥିବୀର ମହାତ୍ମାମାନେ ନିରାମିଷାଶୀ ଓ ଅଳ୍ପାହାରୀ ହୋଇଥିବାର କଥା ଲେଖାଥିଲା, ଏହା ତାହାଙ୍କ ପ୍ରାଣକୁ ଅଧିକ ସ୍ପର୍ଶ କରିଥିଲା । ଏ ପର୍ଯ୍ୟନ୍ତ ଧର୍ମ ବିଶ୍ୱାସରେ ବାପୁଜୀ ନିରାମିଷାଶୀ ଥିଲେ । ବର୍ତ୍ତମାନ ସ୍ୱାସ୍ଥ୍ୟ-ଦୃଷ୍ଟିରୁ ନିରାମିଷ ଖାଦ୍ୟପ୍ରତି ତାହାଙ୍କର ଆସ୍ଥା ଦୃଢ଼ତର ହେଲା । ମିତାହାର ଚରିତ୍ର ଶୁଦ୍ଧିର ପ୍ରଧାନ କାରଣ—ଏ କଥା ବାପୁଜୀଙ୍କ ଜୀବନରେ ପ୍ରମାଣିତ ହୋଇଅଛି ।

କେବଳ ଗୋଟିଏ ନୀତି ମାନି ଚଳିଲେ ମହାମାନବିକତା ଫୁଟେ ନାହିଁ । ସତ୍ୟ ରକ୍ଷା କରିବା, ଅନ୍ତରରେ ଭକ୍ତି ବହିବା, ଚରିତ୍ର ପ୍ରବଳ ରଖିବା, ମିତାହାରୀ ହେବା ପ୍ରଭୃତି ପୂର୍ବୋକ୍ତ ସ୍ୱଭାବ ସହିତ ମିତବ୍ୟୟୀ ହେବା ମଧ୍ୟ ଉଚିତ । ବିଲାତରେ ରହି ନାଚ ଶିଖି, ବାଜା ବଜାଇବା ଜାଣି ସଭ୍ୟ ହେବା ପାଇଁ ବାପୁଜୀଙ୍କର ପହିଲେ ମନ



୨୧ ବର୍ଷ ବୟସରେ ଲଣ୍ଡନର ଛାତ୍ରାବସ୍ଥାରେ

ବଳି ଥିଲା । କିନ୍ତୁ ତିନିମାସ ଉତ୍ତାରେ ତାଙ୍କର ମନ ବଦଳି ଯାଇଥିଲା । ଛାତ୍ର ଜୀବନରେ ଅଧ୍ୟୟନ ପ୍ରଧାନ କର୍ତ୍ତବ୍ୟ ମଣି ନାଚିବା ବଜାଇବା ଛାଡ଼ି ଦେଲେ । ସେ ଯାହା ବ୍ୟୟ କରୁଥିଲେ ତାହାର ହିସାବ ସେ ଲେଖି ରଖୁଥିଲେ । ନାଚ-ବଜା ଶିଖିବାରେ ତାଙ୍କର ଅଧିକ ଖର୍ଚ୍ଚ ପଡ଼ିଗଲା । ଏଣୁ ଶୀଘ୍ରରେ ବାଣ୍ଟି ତାହା ଛାଡ଼ି ଦେଲେ । ଯେଉଁଠାରୁ କଲେଜକୁ ଯିବାପାଇଁ ଗାଡ଼ିଭଡ଼ା ଲାଗିବ ନାହିଁ, ସେଠାରେ ବସାକରି ରହିଲେ । ନିଜେ ରୋଷେଇ କରି ଖାଇଲେ । କାରଣ, ନିଜ ପରିବାରଙ୍କ କଥା ଯେତେବେଳେ ସେ ଭାବିଥିଲେ ସେତେବେଳେ ତାଙ୍କର ଚେତା ଆସିଥିଲା । ଦେଶରେ ମାଆ-ଭାଇ କଷ୍ଟରେ ଦିନ କାଟୁଥିବା ବେଳେ ହୋଟେଲରେ ବା କାହାର ଗୃହରେ ରହି ଲଣ୍ଡନ ସହରରେ ଆରାମ ଉପଭୋଗ କରିବା ଶ୍ରେୟସ୍କର ନୁହେ ବୋଲି ଗାନ୍ଧିଜୀ ମଣିଥିଲେ । ପ୍ରଥମେ ଆତ୍ମୀୟ ସ୍ୱଜନଙ୍କ କ୍ଲେଶ ଏପରି ଉପଲବ୍ଧି କରି ପାରି ଥିବାରୁ ଭବିଷ୍ୟତରେ ବିଶ୍ୱ ମାନବର କ୍ଲେଶ ସେ ହୃଦୟଙ୍ଗମ କରି ପାରିଥିଲେ । ଏଣୁ ବିଶ୍ୱର ଆତ୍ମା ସଙ୍ଗେ ନିଜ ଆତ୍ମାକୁ ମିଳାଇବାରେ ସମର୍ଥ ହୋଇ ମହା-ମାନବରେ ପରିଣତ ହେଲେ ।

ମନୁଷ୍ୟଠାରେ ଲଜ୍ଜା, ଭୟ ପ୍ରଭୃତି ଗୁଣ ମଧ୍ୟ ଅଛି । ସେଗୁଡ଼ିକ ନିରର୍ଥକ ନୁହେ । ଲଜ୍ଜା ଓ ଭୟ ନ ଥିଲେ ମନୁଷ୍ୟ ଉଚ୍ଛୃଙ୍ଖଳ ହୋଇ ପଡ଼େ । ବିଚାର କରିବାର କ୍ଷମତା ଜନ୍ମିବ କାହୁଁ ? ବାପୁଜୀ ପହିଲେ ପହିଲେ ବିଲାତରେ ସଭା ସମିତିରେ ବକ୍ତୃତା ଦେବା ପାଇଁ ସଙ୍କୋଚ ବୋଧ କରୁଥିବା କଥା ସେ ଆତ୍ମ ଚରିତରେ ଲେଖି ଅଛନ୍ତି । କାଳେ ଭାଷାରେ ଦୋଷ ରହିବ ଅଥବା ଅଯଥା କଥା କହି ପକାଇବେ—ଏହି ଆଶଙ୍କାରେ ତାହାଙ୍କ ହୃଦୟ ସଦା

ପାଣ୍ଡୁ ହୋଇଥାଏ । ଏଣୁ ବଡ଼ ବଡ ଲେଖକଙ୍କ ରଚନା ପଢି ଯଥାର୍ଥ କଥା ସଂଯତ ଭାଷାରେ କହିବା ପାଇଁ ସେ ଉଦ୍ୟମ କରିଥିଲେ । ଅତୀତ ବକ୍ତା ବା ଲେଖକଙ୍କର ମନୋହର ଅଭିବ୍ୟକ୍ତିକୁ ଅନୁକରଣ କରି ପାରିଲେ ସୁଲେଖକ ବା ସୁବକ୍ତା ହେବା କଠିନ କଥା ନୁହେ । ଓଳିଅରୁ ପଢ଼ିବା ବେଳେ ଧାନ ଗଜା ହୋଇ ନ ଥାଏ । ମାତୃଗର୍ଭରୁ ପିଲା ଭାଷା ଶିଖି ନ ଥାଏ । ଜଗତରେ ଜନ୍ମ ଲଭି ବୟୋଜ୍ୟେଷ୍ଠ-ମାନଙ୍କ ଠାରୁ କଥା କହିବା ରୀତି ସେ ଶିଖେ । କିନ୍ତୁ ଅପରକୁ ମୁଗ୍ଧ କରି ପାରିବା ଭଳି ଭାଷା ଶିଖିବାକୁ ହେଲେ ଅତୀତ ଲେଖକମାନଙ୍କ ଲେଖା ପଢିବା ଉଚିତ । ସେମାନଙ୍କ ଅଭିବ୍ୟକ୍ତିକୁ ସୁନ୍ଦରତର କରିବା ଓ ନିଜେ ସୁନ୍ଦର ଅଭିବ୍ୟକ୍ତି ସୃଷ୍ଟି କରିବା ଶକ୍ତି ଅତୀତ ସାହିତ୍ୟ ନ ପଢିଲେ ଜନ୍ମେ ନାହିଁ । ନିଜଭିତ୍ତି ନ ଥିଲେ ସଭ୍ୟତାର ବିକାଶ ଘଟେ ନାହିଁ, ନିଜଭିତ୍ତି ସଭ୍ୟତା-ବିକାଶ ପକ୍ଷରେ ଯେପରି ଚରିତ୍ର-ଗଠନରେ ମଧ୍ୟ ସେପରି ଅନୁକୂଳ । ନିଜଭିତ୍ତି ମନୁଷ୍ୟର ଜୀବନକୁ ସଂଯତ କରେ । ଜୀବନ ସଂଯତ ହେଲେ ତପୃରେ ଜ୍ଞାନର ଉତ୍ସ ସ୍ୱତଃ ଉଚ୍ଛୁଳି ପଡ଼େ । ବାପୁଜୀଙ୍କର ଜୀବନରେ ଏହାର ପ୍ରତ୍ୟକ୍ଷ ପ୍ରମାଣ ଅଛି । ସେ ନାନାବିଧ ଚରିତ୍ର-ପରୀକ୍ଷାରୁ ଉତ୍ତୀର୍ଣ୍ଣ ହେବା ଉତ୍ତାରୁ ୧୮୯୧ ସାଲରେ ବାରିଷ୍ଟର ପଦ ପାଇଲେ । ତପୃରେ ବିଲାତରୁ ଫେରିଥିଲେ । "ତୁଳସୀ ଦୁ ପତ୍ରରୁ ବାସେ" । ବାଲ୍ୟକାଳର ଅଭ୍ୟାସ ବୃକ୍ଷରେ ବଦ୍ଧମୂଳ ହେଲେ ତେଣିକି ମନୁଷ୍ୟ ସ୍ୱଚ୍ଛ ପରି ଚାଳିତ ହୁଏ । ବିଲାତରେ ପୁସ୍ତକ ପଢି ପରୀକ୍ଷା ଦେବା ଛାତ୍ର ଜୀବନ ଶେଷ କରି ଜୀବନର କର୍ମ-ଜ୍ଞାନ ପଢ଼ା ଆରମ୍ଭ କରିଥିଲେ ।

---

## ସତ୍ୟ ଲାଭ-ଜୀବନ

ବିଲାତରୁ ଫେରି ବାପୁଜୀ ବୋମ୍ବେଇରେ ପହଞ୍ଚିଲେ । ଫେରୁଥିବାର ସମ୍ବାଦ ପାଇ ତାଙ୍କ ବଡ଼ ଭାଇ ସେଠାକୁ ଯାଇଥିଲେ । ଫେରିବା ପୂର୍ବରୁ ତାହାଙ୍କର ମାତୃ-ବିୟୋଗ ଘଟିଥିଲା । ଭାଇଙ୍କ ମନୋକଷ୍ଟରେ ପଢ଼ାପଢ଼ିରେ ବ୍ୟାଘାତ ଘଟିବ—ଏପରି ଆଶଙ୍କା କରି ବଡ଼ ଭାଇ ବିଲାତକୁ ମାତୃ-ବିୟୋଗ ସମ୍ବାଦ ପଠାଇ ନ ଥିଲେ । ବୋମ୍ବେଇରେ ପହଞ୍ଚିବାରୁ ବାପୁଜୀଙ୍କୁ ସମ୍ବାଦ ଦେଲେ । ବାପୁଜୀ ମର୍ମାହତ ହେଲେ । କିନ୍ତୁ ଅଶ୍ରୁ ତ୍ୟାଗ ନ କରି ଘରକୁ ଆସି ମାତୃ-ଅଶୌଚର ଶୁଦ୍ଧି କ୍ରିୟା ପାଳିଲେ । ବିଲାତ ଯାଇଥିବା ଅପରାଧରେ ଦଳେ ତାହାଙ୍କୁ ଜାତି ବାସନ୍ଦ କଲେ । ଆଉ ଦଳେ କୌଣସି ଆପତ୍ତି କରି ନ ଥିଲେ । ବଡ଼ ଭାଇଙ୍କ ଅନୁରୋଧରେ ଜାତିରେ ମିଶିବା ପାଇଁ ବାପୁଜୀଙ୍କୁ ସଂସ୍କାର-କ୍ରିୟା ଅନେକବାକୁ ପଡ଼ିଥିଲା । ଫଳରେ ସମାଜରେ ନୂତନ ଦଳର ସୃଷ୍ଟି ହେଲା ନାହିଁ । ଯେଉଁ ସଂସ୍କାରକ ସମାଜକୁ ଅବଜ୍ଞା କରି କୁସଂସ୍କାର ଦୂର କରିବା ନାମରେ ଜିଦ୍ ଧରି ବସନ୍ତି ସେମାନେ ସମାଜର ଉପକାର କରିବା ଦୂରେ ଥାଉ, ବରଂ ଅପକାର କରି ବସନ୍ତି ।

ସାଧୁ ସଙ୍ଗରେ ମନୁଷ୍ୟର ଚରିତ୍ର ଯେ ସାଧୁ ହୁଏ, ତାହାର ଜ୍ୱଳନ୍ତ ପ୍ରମାଣ ବାପୁଜୀଙ୍କ ଜୀବନରେ ଘଟିଅଛି । ରେବାଶଙ୍କର ଜଗଜୀବନଙ୍କ ସଙ୍ଗ ଲାଭ କରି ସଂସାରର କର୍ମ-କ୍ଷେତ୍ରରେ ହରିଙ୍କୁ ଉପଲବ୍ଧି କରିବାର ବିଶ୍ୱାସ ବାପୁଜୀଙ୍କ ହୃଦୟରେ ଜାଗିଥିଲା ।

"ହୃଦୟରେ ଖେଳରେ ହରିଙ୍କି ଦେଖିବି ଯେବେ<br>
ଜୀବନ ମୋହର ସଫଳ ମଣିବି ତେବେ ।"

ଜଗଜୀବନଙ୍କ ଭଜନରୁ ଉଦ୍ଧୃତ ପଦଟି ବାପୁଜୀଙ୍କ ଚିତ୍ତରେ ସ୍ଥାୟୀରୂପେ ଅଙ୍କିତ ହୋଇ ଯାଇଥିଲା । ଏ ଭଜନ ଅନ୍ୟ କାହାର ମୁଖରୁ ଶୁଣିଥିଲେ ତାହାଙ୍କର ପ୍ରାଣସ୍ପର୍ଶୀ ହୋଇ ପାରି ଥାଆନ୍ତା କି ନା, ସନ୍ଦେହଜନକ । ଜଗଜୀବନଙ୍କର ଅଗାଧ ଶାସ୍ତ୍ରଜ୍ଞାନ ଥିବା ସଙ୍ଗେ ସଙ୍ଗେ ଚରିତ୍ର ଆଦର୍ଶ ସ୍ଥାନୀୟ ଥିଲା । ଏଣୁ ତାଙ୍କ ଭଜନ ବାପୁଜୀଙ୍କ ହୃଦୟକୁ ଅନାୟାସରେ ଆକର୍ଷଣ କରି ପାରିଥିଲା । ଅଗାଧ ଧନ ବା ପାଣ୍ଡିତ୍ୟ ଥିଲେ ମଧ୍ୟ ଚରିତ୍ର-ଶୁଦ୍ଧି ନ ଥିଲେ ଅପରର ପ୍ରାଣକୁ ଧନ ବା ପାଣ୍ଡିତ୍ୟରେ ମୁଗ୍ଧ କରି ହୁଏ ନାହିଁ, ଆଦର୍ଶ ଚରିତ୍ର ମନୁଷ୍ୟକୁ ମୁକୁଟହୀନ ଅଧୀଶ୍ୱରରେ ପରିଣତ କରିପାରେ । ଜଗଜୀବନଙ୍କଠାରୁ ବାପୁଜୀ ଶିଖିଥିଲେ —

"ଆଶା ନ କର କର୍ମଫଳେ, ଶରଣ ମୋ ପଦ କମଳେ ।"

ବିଲାତରୁ ଫେରି ବାପୁଜୀଙ୍କୁ ସଂସାର-ଜଞ୍ଜାଳ ମୁଣ୍ଡାଇବାକୁ ପଡ଼ିଲା । ନିଜ ପୁଅଙ୍କର ଓ ଭାଇଙ୍କ ପୁଅମାନଙ୍କ ଶିକ୍ଷାଭାର ସ୍ୱହସ୍ତରେ ଆନନ୍ଦରେ ଗ୍ରହଣ କରିଥିଲେ । ବାଳକବାଳିକାମାନଙ୍କ ଗଢ଼ଣରେ ଚରିତ୍ର ପ୍ରସାଦ-ଗୁଣ ବଢ଼େ । କିନ୍ତୁ ଗୃହ-ଖର୍ଚ୍ଚ ପାଇଁ ଅର୍ଥର ପ୍ରୟୋଜନ ପଡ଼ିବାରୁ ବାରିଷ୍ଟରି କରିବା ପାଇଁ ବୋମ୍ବେଇ ଯିବାକୁ ବାଧ୍ୟ ହେଲେ । ଓକିଲାତି କରିବା ତାଙ୍କ ଚରିତ୍ର-ବିରୁଦ୍ଧ, ଏହା ସେ ବୁଝି ପାରି ନ ଥିଲେ । କୁଟନୀତିରେ ଅନଭିଜ୍ଞ ବ୍ୟକ୍ତି ଓକିଲ ବୃତ୍ତିକୁ ଅନୁପଯୁକ୍ତ । ବୋମ୍ବେଇରେ ଓକିଲବୃତ୍ତି ତାହାଙ୍କୁ ଆଦୌ ପୋଷେଇଲା ନାହିଁ । ସେଠାରୁ ରାଜକୋଟକୁ ଆସି ଓକିଲାତି ଆରମ୍ଭ କଲେ । ଏଠାରେ ଜୀବନର ପ୍ରଥମ ଧକ୍କା ତାହାଙ୍କୁ ଖାଇବାକୁ ପଡ଼ିଥିଲା ! ଜଣେ ଇଂରେଜ ଅଫିସରଙ୍କ ଅଦାଲତରେ ତାହାଙ୍କ ଭାଇଙ୍କ ବିରୁଦ୍ଧରେ କୌଣସି ଅଭିଯୋଗ ଥିଲା । ସେ ସାହେବଟି ସହିତ ବିଲାତରେ



୧୮୯୩ ସାଲରେ ଦକ୍ଷିଣ ଅଫ୍ରିକାରେ ବାରିଷ୍ଟର

ବାପୁଜୀଙ୍କର ପରିଚୟ ଥିଲା । ଭାଇଙ୍କ ସୁପାରିଶରେ ଦୁଇଗୁଟି ପଦ କଥା କହିବା ପାଇଁ ବାପୁଜୀ ସାହେବଙ୍କ ପାଖକୁ ଗଲେ । କିନ୍ତୁ ସାହେବ ଦୁର୍ବ୍ୟବହାର କଲେ । କ୍ଷମତା ପାଇଲେ ମନୁଷ୍ୟ କିପରି ପଶୁ ପାଲଟି ଯାଏ ତାହା ବୁଝିବାକୁ ଆଉ ବାକି ରହିଲା ନାହିଁ, ଯାହା ହେଉ, ଏଠାରେ ବାପୁଜୀ ମାସିକ ପ୍ରାୟ ୩୦୦ ଟଙ୍କା ରୋଜଗାର କରୁଥିଲେ । କିନ୍ତୁ ସେତେବେଳେ ସେଠାରେ ଯେଉଁ ପରିସ୍ଥିତି ଥିଲା ତହିଁରେ ବାସ କରିବାକୁ ତାହାଙ୍କୁ ସୁଖ ଲାଗିଲା ନାହିଁ, ଏହି ସମୟରେ ଏକ ମକଦ୍ଦମା ସମ୍ବନ୍ଧରେ ତାହାଙ୍କୁ ଆଫ୍ରିକା ଯିବାକୁ ପଡ଼ିଲା । ସେ ନେଟାଲରେ ଯାଇ ପହଞ୍ଚିଲେ । ଯାତ୍ରା ପୂର୍ବରୁ ତାହାଙ୍କର ଦ୍ୱିତୀୟ ସନ୍ତାନ ଜାତ ହୋଇ ସାରିଥିଲେ । ନେଟାଲରୁ ଡରବାନ କଚେରି ଦେଖିବାକୁ ଯାଇଥିଲେ । ମାଜିଷ୍ଟ୍ରେଟଙ୍କର ବାପୁଜୀଙ୍କ ଉପରେ ନଜର ପଡ଼ିଗଲା । ମୁଣ୍ଡରୁ ଟୋପି କାଢ଼ି ପକାଇବା ପାଇଁ ସାହେବ କହିଲେ । ବାପୁଜୀ ଟୋପି ନ କାଢ଼ି କଚେରି ଛାଡ଼ି ଚାଲି ଆସି ସେଠାରେ ଶ୍ୱେତାଙ୍ଗମାନଙ୍କ ମଧ୍ୟରେ ପ୍ରବର୍ତ୍ତିତ ଭାରତୀୟ ବିଦ୍ୱେଷ ଅନୁସନ୍ଧାନରେ ଜାଣିଲେ । ‘ପଗଡ଼ି କାଢ଼ିବା’ ହୁକୁମ ବିଷୟରେ ସେ ଖବର କାଗଜରେ ଖଣ୍ଡିଏ ଚିଠି ପ୍ରକାଶ କରିଥିଲେ, ଅନ୍ୟାୟ ବିରୁଦ୍ଧରେ ଲଢ଼ାଇ କରିବା ପାଇଁ ଏଠାରେ "ଅସ୍ମାରମ୍ଭାତ୍ ଶୁଭଂ ଭବତୁ" ହେଲା

ଗନ୍ତବ୍ୟ ସ୍ଥାନ ପ୍ରିଟୋରିଆ ଯିବା ବେଳକୁ ପଥରେ ରେଳ ଗାଡ଼ିରେ ଆଉ ଗୋଟିଏ ଘଟଣା ଘଟିଗଲା । ଜଣେ ଶ୍ୱେତାଙ୍ଗ ଯାତ୍ରୀ ଆସି ପ୍ରଥମ ଶ୍ରେଣୀ ଗାଡ଼ିରୁ ଉତୁରି ଯିବାପାଇଁ ତାହାଙ୍କୁ କହିଲା । ସେ ଓହ୍ଲାଇ ନ ପଡ଼ିବାରୁ ପୁଲିସ ସାହାଯ୍ୟରେ ଧକ୍କା ଦିଆଇ ତାହାଙ୍କୁ ଉତାରି ଦେଲା । ଏପରି ଲାଞ୍ଛନା ଆଫ୍ରିକାରେ ଅନେକ

ବାପୁଜୀ ଅନୁଭବ କଲେ ତାହା ନୁହେ । ଆମ ଭାରତବର୍ଷରେ କେତେ ବଡ଼ଲୋକ ଏପରି ଲାଞ୍ଛନା ସହି ଦ୍ୱାର କଣା କାନ୍ଦନ୍ତି । କିନ୍ତୁ ଏ ଲାଞ୍ଛନା ବାପୁଜୀଙ୍କ ହୃଦୟରେ ପ୍ରତିକାର-ଚିନ୍ତାର ବୀଜ ରୋପଣ କରିଥିଲା । ଜେନେରାଲ୍ ମେନେଜରଙ୍କ ପାଖକୁ ତାରଦ୍ୱାରା ଅଭିଯୋଗ ପଠାଇଥିଲେ । ତତ୍ପରେ ଚାର୍ଲସ୍ ଟାଉନରେ ପହଞ୍ଚି ସେଠାରୁ ଜୋହାନସବର୍ଗ ଯିବା ପଥରେ ସାମାନ୍ୟ ଗାଡ଼ିବାଲା ମଧ୍ୟ ତାହାଙ୍କୁ ଶ୍ୱେତାଙ୍ଗମାନଙ୍କ ସଙ୍ଗରେ ବସାଇ ଦେଲା ନାହିଁ । ଅଧିକ ଆଶ୍ଚର୍ଯ୍ୟର କଥା, ଏହି ଶ୍ୱେତାଙ୍ଗଟି ବାପୁଜୀଙ୍କୁ ଛେଳି ବଳଦ ତାହାଙ୍କ ପ୍ରତି ଯଥେଚ୍ଛା ବ୍ୟବହାର କରିବାକୁ ଲାଗିଲା । ବାଡ଼ ଖାଇ ଧୂଆଁ ଛାଡ଼ିବାର ସୁବିଧା ପାଇଁ ବାହାର ଆସନରୁ ଉଠି ନିଜର ଭିତର ଆସନକୁ ଆସିବା ପାଇଁ ବାପୁଜୀଙ୍କୁ ଶ୍ୱେତାଙ୍ଗଟି କହିଲା । ବାପୁଜୀ ନ ଆସିବାରୁ ଉପରେ ବାଧା ବୃଷ୍ଟି କଲା ଓ ତାହାଙ୍କ ବାହାକୁ ଧରି ଓଟାରିଲା । କିନ୍ତୁ ବାପୁଜୀ ଜାଗା ପାଖ ପିତ୍ତଳ ବାଡ଼କୁ ଭିଡ଼ି ଧରି ଆସନ ଛାଡ଼ିଲେ ନାହିଁ, ଅନ୍ୟାନ୍ୟ ଯାତ୍ରୀମାନଙ୍କର ଦୟା ହେଲା । ସେମାନେ ଓଟାରିବା ପାଇଁ ବାରଣ କଲେ । ଏହିଠାରେ ଅହିଂସା ଲଢ଼େଇର ପ୍ରତ୍ୟକ୍ଷ ଫଳ ସେ ପ୍ରଥମେ ଅନୁଭବ କରିଥିଲେ । ନିଜ ଅନୁଭବ-ଜ୍ଞାନ ପ୍ରତି ପରର ଶତ ସମାଲୋଚନାରେ ଅନାସ୍ଥା ଜନ୍ମେ ନାହିଁ, ଏଣୁ ଅସହଯୋଗ-ଆନ୍ଦୋଳନର ଅହିଂସା-ମନ୍ତ୍ରକୁ ବଳାସୀ ରାଜନୀତିଜ୍ଞମାନେ ଯେତେ ସମାଲୋଚନା କଲେ ମଧ୍ୟ ବାପୁଜୀ ତାହା ଛାଡ଼ୁ ନ ଥିଲେ । ସୁନାକୁ ଯେତିକି ପୋଡ଼ିବ ସେତିକି ସେ ବାଉ ବାଉ ହୁଏ କରି । ଏଣୁ ଅତ୍ୟାଚରିତ ହୋଇ ହିଂସାରୁ ପ୍ରତିଶୋଧ ନେବା ପାଇଁ ଆଦୌ ତାଙ୍କର ପ୍ରବୃତ୍ତି ନ ଥିଲା ।

"ପରିତ୍ରାଣାୟ ସାଧୂନାଂ ବିନାଶାୟ ଚ ଦୁଷ୍କୃତାମ୍ ।
ଧର୍ମ ସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ ॥"

ଦୁଷ୍କୃତ ଲୋକଙ୍କୁ ମାରିବା ପାଇଁ ଓ ସାଧୁମାନଙ୍କୁ ରକ୍ଷିବା ପାଇଁ ଈଶ୍ୱର ଅବତାର ଗ୍ରହଣ କରନ୍ତି । ଦୁଷ୍କୃତ ଲୋକ କିଏ, ନିଜର ଭୋଗ ବିଳାସ ପାଇଁ ନିରୀହ ଲୋକଙ୍କୁ ଯେ ପୀଡ଼ା ଦିଏ ସେ ଦୁଷ୍କୃତ ଲୋକ । କୌଣସି ରାଜା ଅସ୍ତ୍ରଦର୍ଶୀ ହେଲେ ସେ ଅସ୍ତ୍ରରେ ଦୁଷ୍କୃତ ଲୋକର ବିନାଶ କରିପାରେ । କିନ୍ତୁ ଭାରତରେ ସବୁ ରାଜାମାନେ ଯେତେବେଳେ ଅତ୍ୟାଚାରୀ ହେଲେ ସେତେବେଳେ ବୁଦ୍ଧ-ଅବତାର କେବଳ ଅହିଂସା ମନ୍ତ୍ର ପ୍ରଚାର କରିଥିଲେ । ଯୀଶୁଖ୍ରୀଷ୍ଟ ମଧ୍ୟ କେବଳ ଅହିଂସା-ମନ୍ତ୍ର ପ୍ରଚାର କରିଥିଲେ । ସେମାନଙ୍କ ଅହିଂସା ମନ୍ତ୍ର କ୍ରମଶଃ ଲୋକେ ଉପଲବ୍ଧି କଲେ ଓ ତାହା କୋଟି କୋଟି ନରନାରୀଙ୍କ ପ୍ରାଣ ଅଧିକାର କଲା । ସତ୍ୟ କେତେବେଳେ ହେଲେ ବିଲୁପ୍ତ ହୁଏ ନାହିଁ, ବାପୁଜୀ ଯଦି ଶ୍ୱେତାଙ୍ଗଠାରେ ପ୍ରତିହିଂସା ପ୍ରୟୋଗ କରି ଥାଆନ୍ତେ ତେବେ ସେଠାରେ ତାଙ୍କର ପ୍ରାଣହାନି ଘଟିବା ଅସମ୍ଭବ ନ ଥିଲା । ସେ କେବଳ ଅହିଂସା-ମନ୍ତ୍ର ଯୋଗୁଁ ପ୍ରାଣ ରକ୍ଷା ପାଇଲେ କହିବାକୁ ହେବ । ଯେ ପାଷଣ୍ଡ ଆଘାତ କରିଥିଲା ପଛେ ତାହା ହୃଦୟର ଅବସ୍ଥା କଅଣ ହେଲା ତାହା ଆମର ଜାଣିବାର ଉପାୟ ନାହିଁ । କିନ୍ତୁ ନିର୍ଦ୍ଦୋଷକୁ ଦଣ୍ଡ ଦେଇ ପ୍ରାଣ ଅନୁତପ୍ତ ହୁଏ କି ନା ତାହା ପାଠକମାନେ ନିଜ ହୃଦୟକୁ ପଚାରିବା ଉଚିତ ।

ବାପୁଜୀ ପ୍ରିଟୋରିଆରେ ରହିଥିଲେ । ଭାରତୀୟମାନଙ୍କ ପ୍ରତି ସେଠାରେ କିପରି ଦୁର୍ବ୍ୟବହାର କରାଯାଏ ସେ ବିଷୟରେ ଦିନକୁ ଦିନ ତାଙ୍କର ଅଭିଜ୍ଞତା ବଢ଼ିଲା । ତାହାଙ୍କର ହୃଦୟରେ ସଂକୀର୍ଣ୍ଣତା ଆଦୌ ନ ଥିଲା । ଖ୍ରୀଷ୍ଟିୟାନମାନଙ୍କ ସଙ୍ଗେ ମିଶିଲେ । ଗୀର୍ଜାକୁ ଗଲେ । ଖ୍ରୀଷ୍ଟ ଧର୍ମର ଅନେକ ଗ୍ରନ୍ଥ ପଢ଼ିଲେ । କିନ୍ତୁ ତାହାଙ୍କୁ ନିରପେକ୍ଷ ସମାଲୋଚକ ହୋଇ ପଢୁଥାଆନ୍ତି । ଖ୍ରୀଷ୍ଟିୟାନମାନେ

ହିନ୍ଦୁ ଧର୍ମ ଛାଡ଼ି ଖ୍ରୀଷ୍ଟ ଧର୍ମ ଗ୍ରହଣ କରିବା ପାଇଁ ଅନେକ ପ୍ରବର୍ତ୍ତାଇଲେ ମଧ୍ୟ ସେ ହିନ୍ଦୁ ଧର୍ମ ଛାଡ଼ି ପାରିଲେ ନାହିଁ । ମା ଲଗାଇ ଦେଇଥିବା ଟେକର ତୁଳସୀ ମାଳି ଛିଣ୍ଡାଇ ଖ୍ରୀଷ୍ଟ ଧର୍ମ ଗ୍ରହଣ କଲେ ମା'ଙ୍କୁ ଅବମାନନା କରିହେବ ବୋଲି ତାହାଙ୍କର ଦୃଢ଼ ବିଶ୍ୱାସ ଥାଏ । ଗର୍ଭଧାରିଣୀ ମା ପ୍ରତି ପ୍ରଗାଢ଼ ଭକ୍ତି ନ ଥିଲେ ମାତୃଭୂମି ପ୍ରତି ଭକ୍ତି ଜନ୍ମି ଥାଆନ୍ତା କିପରି । ପ୍ରକୃତିର ଏକ ନିୟମରେ ବିଶ୍ୱ ପରିଚାଳିତ ହେଉଅଛି । ଯାହାର ହୃଦୟରେ ଭକ୍ତି ନ ଥିବାରୁ ଗର୍ଭଧାରିଣୀ ମା ପ୍ରତି ଅନାସ୍ଥା ଦେଖାଏ ସେ ଦେଶଭକ୍ତ ହେବା ଅସମ୍ଭବ । ପୁଣି ନିଜ କୌଳିକ ହିନ୍ଦୁ ଧର୍ମର ତତ୍ତ୍ୱ ନ ବୁଝି ସହସା ଖ୍ରୀଷ୍ଟ ଧର୍ମ ଗ୍ରହଣ କରିବା ଅବିବେକର କାର୍ଯ୍ୟ ହୋଇ ଥାଆନ୍ତା । ସେ ବିଶେଷ ବିଗ୍ଭର କରି ଖ୍ରୀଷ୍ଟ ଧର୍ମ ଗ୍ରହଣ କରି ନ ଥିଲେ ବୋଲି ମୋର ବିଶ୍ୱାସ ହୁଏ ନାହିଁ । ସଚ୍ଚରିତ୍ରତା ଫଳରେ ମାନବ ଜାତିର ସାର ଧର୍ମର ଉତ୍ସ ସ୍ୱତଃ ତାହାଙ୍କ ହୃଦୟ-କନ୍ଦରରୁ ଉଚ୍ଛୁଳି ଥିଲା । ସାଧୁ ଜୀବନ ଯାପନ କରିବା ପ୍ରତ୍ୟେକ ଧର୍ମର ଚରମ ଲକ୍ଷ୍ୟ । ସାଧୁ ଜୀବନ ଯାପନ କଲେ ସଙ୍କୀର୍ଣ୍ଣତା ବା ସାମ୍ପ୍ରଦାୟିକତା ସ୍ୱତଃ ଉତ୍ପାଟିତ ହେବ ।

ବାପୁଜୀ ପ୍ରିଟୋରିଆରେ ପହଞ୍ଚି ଭାରତୀୟମାନଙ୍କ ଦୁରବସ୍ଥା ଶୁଣି ଓ ପ୍ରତ୍ୟକ୍ଷ କରି ଅକୁଳ ହୋଇ ପଡ଼ିଲେ । ସେଠାକାର କୁଲି ଓ ଦୋକାନୀମାନଙ୍କୁ ଘେନି ସେ ଗୋଟିଏ ସଭା ଗଢ଼ିଲେ । ଇଂରାଜୀ ଭାଷାରେ ଅନଭିଜ୍ଞ କେତେକ ଲୋକଙ୍କୁ ପ୍ରତ୍ୟହ ଇଂରାଜୀ ମଧ୍ୟ ପଢ଼ାଉଥିଲେ । "କୃପାଳୁ ସର୍ବଲୋକ ହିତ । ଶୁଚି ପବିତ୍ର ଦୃଢ଼ବ୍ରତ ।"— ସବୁ ତାହାଙ୍କ ଠାରେ ଠୁଳ ହେବାର ଦେଖିଲୁ । ଲୋକଙ୍କ ଦୁର୍ଦ୍ଦଶା ଘୁଞ୍ଚାଇବା ପାଇଁ କର୍ତ୍ତୃପକ୍ଷଙ୍କ ସଙ୍ଗେ ଚିଠିପତ୍ରର ଆଦାନ ପ୍ରଦାନ ମଧ୍ୟ ଚଳାଇ ଥିଲେ । ଏହିପରି କାର୍ଯ୍ୟ କରି ସେଠାରେ ସେ ବିଖ୍ୟାତ

ହେଲେ । ସେଠାକାର ଶ୍ୱେତାଙ୍ଗମାନେ ତାହାଙ୍କୁ କୁଲି ବାରିଷ୍ଟର ଆଖ୍ୟା ଦେଲେ ।

"ଅୟଂ ନିଜଃ ପରୋବେତ୍ତି ଗଣନା ଲଘୁଚେତସାଂ
ଉଦାର ଚରିତାନାନ୍ତୁ ବସୁଧୈବ କୁଟୁମ୍ବକଂ ।"

ଏ ମୋର, ସେ ପରର—ଏପରି ବିଚାର ଲଘୁଚେତାମାନଙ୍କର ଥାଏ । ଯେଉଁମାନଙ୍କର ଚରିତ ଉଦାର ସେମାନେ ପୃଥିବୀର ସମସ୍ତଙ୍କୁ ନିଜର କୁଟୁମ୍ବ ମନେ କରନ୍ତି । ଏ କଥା ଭୂତବାଦୀ ଶ୍ୱେତାଙ୍ଗମାନଙ୍କର ବୁଝିବା ପାଇଁ ସାମର୍ଥ୍ୟ ନ ଥିଲା ।

ଭାରତୀୟମାନଙ୍କ ଦୁର୍ଦ୍ଦଶା-ମୋଚନରେ ଲାଗିଥିଲେ ମଧ୍ୟ ଯେଉଁ ମକଦ୍ଦମା ସମ୍ପର୍କରେ ବାରିଷ୍ଟରମାନଙ୍କୁ ସାହାଯ୍ୟ କରିବାକୁ ଯାଉଥିଲେ ବାପୁଜୀ ତାହା ପାଶୋରି ଦେଇ ନ ଥିଲେ । ମକଦ୍ଦମାଟି ବଡ଼ ଜଟିଳ ଥିଲା । ପକ୍କା ପକ୍କା ବାରିଷ୍ଟରମାନେ ମକଦ୍ଦମା ଲଢୁଥିଲେ । ସେମାନେ ଲଢ଼ି ସଜାଇବା ପାଇଁ ଯେଉଁ ଉପଦେଶ ଦିଅନ୍ତି ତାହାକୁ ଶିରୋଧାର୍ଯ୍ୟ କରି କାଗଜ ପତ୍ର ପଢ଼ି ମନପ୍ରାଣ ଢାଳି ଲଢ଼ି ସଜାନ୍ତି । ସେପରି କରିବାରୁ ଜଟିଳ ମକଦ୍ଦମାରୁ ସତ୍ୟ କିପରି ଆବିଷ୍କାର କରିବାକୁ ହୁଏ ତାହା ଶିଖିଲେ । ବାରିଷ୍ଟରମାନଙ୍କ ନିର୍ଦ୍ଦେଶ କ୍ରମେ ଚଳି ନ ଥିଲେ ଶିଖିପାରି ନ ଥାଆନ୍ତେ । ଏଣୁ ଅପରିପକ୍ୱ ବୁଦ୍ଧିରେ ପ୍ରବୀଣ ଲୋକଙ୍କ ସଙ୍ଗେ ଯୁକ୍ତିତର୍କ ନ କରି ସେମାନଙ୍କ ନିର୍ଦ୍ଦେଶ କ୍ରମେ ଚଳିବା ଉଚିତ । ବାପୁଜୀ ପ୍ରବୀଣ ବାରିଷ୍ଟରମାନଙ୍କ ନିର୍ଦ୍ଦେଶ ମାନି ଲଢ଼ି ସଜାଇ ଦେଖିଲେ ସେ ମକଦ୍ଦମାରେ ଆପଣା ମକ୍କେଲର ଜୟ ସୁନିଶ୍ଚିତ । କିନ୍ତୁ ମକଦ୍ଦମା ଚକଟେ ଦିନ ଚାଲିବ ତାହାର ଠିକଣା ନାହିଁ । ମକଦ୍ଦମା ବେଶୀଦିନ

ଲାଗି ରହିଲେ ବାରିଷ୍ଟରମାନଙ୍କର ଲାଭ । କିନ୍ତୁ ବାଦୀ ପ୍ରତିବାଦୀ ସର୍ବସ୍ୱାନ୍ତ ହେବେ । ଏଣୁ ରଫା ହୋଇ ତୁଟିଗଲେ ଦୁଇ ପକ୍ଷର ମଙ୍ଗଳ । ରଫା ପାଇଁ ଯତ୍ନ କରି କୃତକାର୍ଯ୍ୟ ହେଲେ । ଉହିଁରେ ତାଙ୍କର ବିଶ୍ୱାସ ଜନ୍ମିଲା ଯେ, ମକଦ୍ଦମାରେ ଲଢ଼ିବା ଅପେକ୍ଷା ରଫାରେ ତୁଟାଇବା ଶ୍ରେୟସ୍କର । ଏଣିକି ଯେତେ ମକ୍କେଲ ମକଦ୍ଦମା ଲଢ଼ିବା ପାଇଁ ତାହାଙ୍କ ନିକଟକୁ ଆସିଲେ ସମସ୍ତଙ୍କ ମକଦ୍ଦମା ସାଲିସିରେ ତୁଟାଇଲେ । ନିଜର ଆୟରେ ମଧ୍ୟ ବାଧା ପଡ଼ିଲା ନାହିଁ, ଏହିପରି କର୍ମକ୍ଷେତ୍ରରେ ସେ ଯେଉଁ ସତ୍ୟ ଉପଲବ୍ଧି କରୁଥାଆନ୍ତି ତାହାକୁ କାର୍ଯ୍ୟରେ ପରିଣତ କରିବା ପାଇଁ ତତ୍ପର ହୋଇ ଥାଆନ୍ତି, ଏଣୁ ଭାରତରେ ପଞ୍ଚାୟତ ଶାସନ ପ୍ରତିଷ୍ଠା କରିବା ପାଇଁ ସେ ଯତ୍ନଶୀଳ ଥିଲେ । ପ୍ରାଚୀନ ଭାରତରେ ମଧ୍ୟ ଏହିପରି ଶାସନ ଥିଲା ।

"ସତ୍ତ୍ୱଂ ରଜସ୍ତମ ଇତି ଗୁଣାଃ ପ୍ରକୃତିସମ୍ଭବାଃ ।
ନିବଧ୍ନନ୍ତି ମହାବାହୋ ଦେହେ ଦେହିନମବ୍ୟୟଂ ।"

ମନୁଷ୍ୟ ସଂସାରରେ ସତ୍ତ୍ୱ, ରଜ, ତମ ତିନିଗୁଣରେ ଆବଦ୍ଧ । ତମଗୁଣରେ ବସି ରହି ପେଟ ପୋଷିବାକୁ ଇଚ୍ଛା କଲେ ହୃଦୟଟି ଚିରକାଳ ଅନ୍ଧାରରେ ବୁଡ଼ି ରହି ଥାଏ । ରଜ-ଗୁଣରେ କାମ କରି ଯେଉଁ ସତ୍ୟ ଉପଲବ୍ଧି କରିବ ତାହାକୁ ଜୀବନରେ ପାଳି ପାରିଲେ ସତ୍ତ୍ୱ-ଗୁଣର ବିକାଶ ଘଟେ । ଯେତେବେଳେ ଜନସାଧାରଣଙ୍କର ସତ୍ତ୍ୱଗୁଣ ଫୁଟି ଉଠିବ ସେତେବେଳେ ପୃଥିବୀ ସ୍ୱର୍ଗରେ ପରିଣତ ହେବ ।

ମକଦ୍ଦମା ନିଷ୍ପତ୍ତି ପାଇବା ଉତ୍ତାରେ ପ୍ରିଟୋରିଆ ଛାଡ଼ି ଦେଶକୁ ଫେରିବା ପାଇଁ ଉଦ୍ୟତ ହେବା ମୁହୂର୍ତ୍ତରେ ସମ୍ବାଦ-ପତ୍ର ପଢ଼ି ଜାଣିଲେ ଯେ ନେଟାଲର ଶାସନ-ସଭାକୁ ସଭ୍ୟ ନିର୍ବାଚନ କରିବାର

ଯେଉଁ ଅଧିକାର ସେଠାକାର ଭାରତୀୟମାନଙ୍କର ଅଛି ତାହା ଛାଡ଼ି ନେବା ପାଇଁ ପ୍ରସ୍ତାବ ଗୃହୀତ ହୋଇଅଛି । ହଠାତ୍ ଚମକି ପଡ଼ି ଦେଶ ଭାଇ-ମାନଙ୍କ ଏହାର ହାଲ ପଚାରିବାରୁ ସେମାନେ ଉତ୍ତର ଦେଲେ ସେ ଚଷା କି ଜାଣେ ପଣାର କଥା । ବନ୍ଧୁ ସନ୍ଧାନରେ ତଥ୍ୟ ଅବଗତ ହୋଇ କହିଲେ ଯେ ଏ ପ୍ରସ୍ତାବକୁ ନାକଚ ନ କଲେ ଭାରତୀୟ-ମାନଙ୍କ ସମ୍ମାନ-ହାନି ଘଟିବ । ଏଥିପାଇଁ ଚେଷ୍ଟା କରିବ କିଏ ? ଲୋକମାନେ ବାପୁଜୀଙ୍କୁ ଅଉ ମାସେ ରହିବା ପାଇଁ ଅନୁରୋଧ କରି ତାହାଙ୍କ ଦକ୍ଷିଣାର ପ୍ରଶ୍ନ ଉଠାଇଲେ । କିନ୍ତୁ ବାପୁଜୀ ଉତ୍ତର ଦେଲେ "ମୋର ଦକ୍ଷିଣା ଲୋଡ଼ା ନାହିଁ, ଆପଣମାନଙ୍କ ସେବକ ରୂପେ କାମ କରିବାକୁ ଇଚ୍ଛା କରେ । କେବଳ ଏଥିକି ଟେଲିଗ୍ରାଫ ଓ ଅନ୍ୟାନ୍ୟ ପ୍ରୟୋଜନୀୟ ଖର୍ଚ୍ଚ ପାଇଁ ଅର୍ଥ ଲୋଡ଼ା ।" ଶ୍ରୋତାମାନଙ୍କ ଚିତ୍ତରେ ତୁମୁଳ ଆନନ୍ଦ ଜାତ ହେଲା । ଏଥିପାଇଁ ଅର୍ଥର ଅଭାବ ଘଟିବ ନାହିଁ ବୋଲି ଜବାବ ଦେଲେ । ସରକାରଙ୍କ ସଙ୍ଗେ ଲଢ଼ିବା ପାଇଁ ଏଠାରେ ବାପୁଜୀ ରଣ-କ୍ଷେତ୍ରରେ ଅବତୀର୍ଣ୍ଣ ହୋଇଲେ । ଏବେ ସୀତାଙ୍କ ସତୀତ୍ୱର ଅଗ୍ନି-ପରୀକ୍ଷା ଉପସ୍ଥିତ ହେଲା । ପରୀକ୍ଷା ଯାହାର ଛାତ୍ର-ଜୀବନରେ ସରିଯାଏ ପୂର୍ଣ୍ଣ ମାନବିକତା ତାହା ଠାରେ ପ୍ରକାଶ ପାଏ ନାହିଁ । କର୍ମ-ଜୀବନରେ ଭୀଷଣ ପରୀକ୍ଷା—ଗୃହକୁ ଯାଇ ଯେ ଉତ୍ତୀର୍ଣ୍ଣ ହୋଇ ଆସେ ସେ ଯଥାର୍ଥ ମନୁଷ୍ୟ । ଛାତ୍ର-ଜୀବନରେ ସତ୍ୟର ଲକ୍ଷଣ ପୁସ୍ତକ ପଢ଼ି ବା ଗୁରୁ ମୁଖରୁ ଶୁଣି ବୁଝାଯାଏ । କର୍ମ-ଜୀବନରେ ତାହାର ସ୍ୱରୂପ ଉପଲବ୍ଧି କରାଯାଏ ।

ସାଧାରଣଙ୍କ ହିତ ପାଇଁ କାମ ଆରମ୍ଭ କରିବାରୁ ସେଠାରେ କୁରୁ-ପାଣ୍ଡବ ବିବାଦ ଆଉ ରହିଲା ନାହିଁ । ଅର୍ଥାତ୍ ହିନ୍ଦୁ, ମୁସଲମାନ, ପାର୍ସି, ଗୁଜୁରାଟୀ ପ୍ରଭୃତି ସାମ୍ପ୍ରଦାୟିକ ଭେଦ ଉଠିଗଲା । ସମସ୍ତେ ଏକ ପ୍ରାଣରେ କାମ କଲେ । ଆପତ୍ତି ଦରଖାସ୍ତ

ଶାସନ-ଯନ୍ତ୍ରକୁ ଯାଉଥିଲା । କିନ୍ତୁ ଫଳ ହେଲା ନାହିଁ , ତଥାପି କେତେକ ଶ୍ୱେତାଙ୍ଗ ନେତାଙ୍କର ଚେଷ୍ଟା ଅସିଥିଲା । ବର୍ତ୍ତମାନ ବାପୁଜୀ ସେଠାରେ ସ୍ଥାୟୀ ଭାବରେ ରହି "ମନ୍ତ୍ରଂ ସାଧୟେତ୍ ବା ଶରୀରଂ ପାତୟେତ୍" ନୀତି ଅବଲମ୍ବନ କରିବା ପାଇଁ କୃତସଙ୍କଳ୍ପ କଲେ । ସେଠାରେ ବାରିଷ୍ଟର କରିବା ପାଇଁ ଅନୁମତି ପାଇଲେ । "ଯେଉଁ ଦେଶକୁ ଯାଇ ସେ ଦେଶର ଫଳ ଖାଇ"—ନୀତି ଧରି କେତେକ ଅନ୍ୟାୟ ପ୍ରଥା ମାନିବାରୁ ଅନୁମତି ପାଇଲେ । ଗୁରୁତର କାର୍ଯ୍ୟ ହାସଲ କରିବା ଲକ୍ଷ୍ୟ ହୋଇଥିବାରୁ କ୍ଷୁଦ୍ର ଅନ୍ୟାୟ କଥା ମାନି ନେଉଥିଲେ ମଧ୍ୟ ଭିତରୁ କେବେ ପାଶୋରି ନ ଥିଲେ । ସେଠାରେ ଲଢ଼ିବା ପାଇଁ ଯେଉଁ ଅନୁଷ୍ଠାନ ଗଢ଼ିଲେ ତାହାର ନାମ 'କଂଗ୍ରେସ' ଦିଆଗଲା । ଏଥିରେ କାହାରି କାହାର ଆପତ୍ତି ଥିଲା । ମାତ୍ର 'କଂଗ୍ରେସ' ସେତେବେଳେ ଭାରତର ପ୍ରାଣ ହୋଇଥିବାରୁ ବାପୁଜୀ ଏହି ନାମକୁ ପସନ୍ଦ କରିଥିଲେ । କାରଣ ପିତା ଏବଂ ପୁତ୍ରର ନୈସର୍ଗିକ ସମ୍ବନ୍ଧକୁ ଛାଡ଼ିବା ପାଇଁ ସେ ମନ ବଳାଇ ନ ଥିଲେ । କଂଗ୍ରେସ ଗଢ଼ିବା ପୂର୍ବରୁ ଦୀନବନ୍ଧୁ ଆଣ୍ଡ୍ରୁଜ୍ ସାହେବଙ୍କ ସହିତ ତାହାଙ୍କର ପରିଚୟ ହୋଇ ଯାଇଥିଲା ।

ଆଫ୍ରିକାରେ ଗିରିମାଟିଆ ଭାରତୀୟମାନଙ୍କ ପ୍ରତି ଘୋର ଅନ୍ୟାୟ ବ୍ୟବହାର କରା ଯାଉଥିଲା । ପ୍ରାୟ ୧୮୬୦ ସାଲରେ ଗୋରାମାନେ ନେଟାଲରେ ଆଖୁ-ଚାଷ ଆରମ୍ଭ କରିବା ପାଇଁ ଭାରତରୁ କୁଲି ନେଲେ । ସେତେବେଳେ କୁଲିମାନେ ପୂରାପୂରି ପାଞ୍ଚବର୍ଷ ଆଫ୍ରିକାରେ ରହିବା ପାଇଁ ଚୁକ୍ତି-ପତ୍ର ଲେଖି ଦେଉଥିଲେ । ଚୁକ୍ତି-କାଳ ପୂରିଲେ ଇଚ୍ଛା କଲେ ସେମାନେ ସେଠାରେ ସ୍ଥାୟୀ ଭାବରେ ବସବାସ କରି ପାରିବେ ଓ ଜମିରେ ମାଲିକ ସତ୍ତ୍ୱ ପାଇବେ ବୋଲି ସେମାନଙ୍କୁ ଆଶା ମଧ୍ୟ ଦିଆ ଯାଉଥିଲା । ଏହି କୁଲିମାନଙ୍କୁ ଗିରିମାଟିଆ କହନ୍ତି । ଏମାନେ ସେଠାରେ କୃଷିର ବହୁତ ଉନ୍ନତି ସାଧନ କଲେ । ସେମାନେ

ମିତବ୍ୟୟୀ ଥିବାରୁ ହାତରେ ଦୁଇ ପଇସା ସଞ୍ଚୟ କରି କ୍ରମଶଃ ଜମିଦାର ହେଲେ । କ୍ରମଶଃ ଭାରତରୁ ବ୍ୟବସାୟୀମାନେ ଗଲେ । ଏହା ଗୋରାମାନଙ୍କର ଅସହ୍ୟ ହେଲା । ଏଣୁ ସେମାନେ ତଳୋକ୍ତ ସର୍ତ୍ତରେ ଗିରିମାଟିଆଙ୍କର ସର୍ବନାଶ କରିବାକୁ ଉଦ୍ୟତ ହୋଇ ପଡ଼ିଥିଲେ :—

(୧) ଚୁକ୍ତି-କାଳ ପୂରିଲେ ଗିରିମାଟିଆମାନେ ଭାରତକୁ ଫେରିଯିବେ କିମ୍ବା

(୨) ପ୍ରତି ଦୁଇ ବର୍ଷରେ ସାନ୍ନ ଚୁକ୍ତିରେ ଅଧିକ କିଛି ପାଉଣା ପାଇ ବନ୍ଧା ହେଉଥିବେ ଏବଂ

(୩) କେହି ଭାରତକୁ ଫେରିବା ପାଇଁ ବା ସାନ୍ନ ଚୁକ୍ତି କରିବା ପାଇଁ ଅମଙ୍ଗ ହେଲେ ସେ ବର୍ଷକୁ ୨୫ ପାଉଣ୍ଡ ବା ଟ ୩୭୫୯ ଙ୍କା ଟିକସ ଦେବ ।

ଭାରତର ବଡଲାଟ ଲର୍ଡ ଏଲଗିନ୍‌ଙ୍କ ପାଖକୁ ଏ ପ୍ରସ୍ତାବ ଆସିବାବେଳେ ଏହାର ବିରୁଦ୍ଧରେ ସମଗ୍ର ଦକ୍ଷିଣ ଆଫ୍ରିକାରେ ତୁମୂଳ ଆନ୍ଦୋଳନ ଚାଲିଥାଏ । ବଡଲାଟ ୨୫ ପାଉଣ୍ଡ ବଦଳରେ ୩ ପାଉଣ୍ଡ ଟିକସ ଅସୁଲ କରିବା ପାଇଁ ମଙ୍ଗି ଗଲେ । କିନ୍ତୁ କୁଲିର ବାର୍ଷିକ ଆୟ ଟ ୧୨୯ ଙ୍କା ମାତ୍ର । ବାର୍ଷିକ ଟ ୩୫୯ ଙ୍କା ତାହାଠାରୁ ଆଦାୟ କରିବା ଗର୍ହିତ କାର୍ଯ୍ୟ—ଏ କଥା ବଡ଼ଲାଟଙ୍କ ମସ୍ତିଷ୍କରେ ପ୍ରବେଶ କଲା ନାହିଁ । ୨୫ ପାଉଣ୍ଡ ବଦଳରେ ୩ ପାଉଣ୍ଡ ହେବାରୁ କୁଲିମାନେ କିଛିଏ ଆଶ୍ୱସ୍ତ ହେଲେ । କିନ୍ତୁ ବାପୁଜୀଙ୍କ ମନ ମାନିଲା ନାହିଁ । ଏହିଠାରେ "ହତ୍ୱା ବା ପ୍ରାପ୍ସ୍ୟସି ସ୍ୱର୍ଗଂ ଜିତ୍ୱା ବା ଭୋକ୍ଷ୍ୟସେ ମହୀଂ"—ନୀତି ଧରି ଅହିଂସା-ଯୁଦ୍ଧ ସେ ଆରମ୍ଭ କଲେ । କିନ୍ତୁ ଗିରିମାଟିଆ ଗୁଳି-ଚୋଟରେ ମଲେ । ପ୍ରାୟ ଦଶ ହଜାରରୁ

ଅଧିକ କଏଦୀ ହୋଇଥିଲେ । ଏ ଲଢ଼ାଇ ପ୍ରାୟ ଷୋଡ଼ଶ ବର୍ଷ ଚଲାଇବା ପରଠାରୁ ଜୟଲାଭ ହେଲା । ମାନନୀୟ ଗୋଖ୍‌ଲେ ଏବଂ ଅନ୍ୟାନ୍ୟ ସ୍ୱଦେଶୀ ଓ ବିଦେଶୀ ସହୃଦୟଗଣ ଏ ଲଢ଼ାଇରେ ବାପୁଜୀଙ୍କୁ ସାହାଯ୍ୟ କରିଥିଲେ । ମଞ୍ଜି ପୋତିବା ଦିନ ଗଛ ଉଠି ଫଳ ଫଳେ ନାହିଁ । ଆତ୍ମ-ବିଶ୍ୱାସ ରଖି ଓ ଧୈର୍ଯ୍ୟ ଧରି କାମ କଲେ ସିଦ୍ଧି-ଲାଭ ଅସମ୍ଭବ ନୁହେଁ । ସେଥି ସଙ୍ଗେ ଉଦାରତା, ସହିଷ୍ଣୁତା ଓ ସତ୍ୟକୁ ଅବଲମ୍ବନ କରିବା ମଧ୍ୟ ଉଚିତ ।

ଆନ୍ଦୋଳନ ଦକ୍ଷିଣ ଆଫ୍ରିକାରେ ଚାଲୁଥିବା ବେଳେ ଛ'ମାସ ପାଇଁ ସେଠାର କଂଗ୍ରେସକୁ ଅନୁମତି ମାଗି ବାପୁଜୀ ଦେଶକୁ ଆସିଥିଲେ । ସେତେବେଳେ ସେ ଆଦମ୍‌ଜୀ ମିଆଁ ଖାଁଙ୍କ ଉପରେ କଂଗ୍ରେସର ଭାର ଅର୍ପଣ କରିଥିଲେ । ଏହି ମିଆଁ ସାହେବଙ୍କର ବିଶ୍ୱବିଦ୍ୟାଳୟର କୌଣସି ଉପାଧି ନ ଥିଲା । କିନ୍ତୁ ଅଧ୍ୟବସାୟ, ମଧୁର ସ୍ୱଭାବ ଓ ଶିଷ୍ଟାଚାରରେ କଂଗ୍ରେସର ଯାବତୀୟ କାର୍ଯ୍ୟ ସୁଚାରୁରୂପେ ସୁପରିଚାଳନା କରିଥିଲେ । ଏଥିରୁ ବାପୁଜୀ ବୁଝି ପାରିଥିଲେ ଯେ ଶାସକ ହେବା ପାଇଁ ବିଶ୍ୱବିଦ୍ୟାଳୟର ଉପାଧି ଲୋଡ଼ା ହୁଏ ନାହିଁ । ଆମର ଶାସ୍ତ୍ରରେ ମଧ୍ୟ ଅଛି ଯେ, ଆତ୍ମଜ୍ଞାନରେ ସର୍ବଜ୍ଞାନର ଅଧିଷ୍ଠାନ । ଯେ ଆତ୍ମାକୁ ଚିହ୍ନି ପାରିବ ସେ ସବୁକଥା ଜାଣି ପାରିବ । ମୋତେ ଜଣେ ମାଇଲେ କାନ୍ଦେ, ଅତଏବ ଅପରକୁ ମାଇଲେ ତାହାକୁ କାନ୍ଦୁଥିବ—ଏପରି ବିଚାର ଯାହାର ସହଜେ ଆସିପାରେ ସେ ପରକୁ ମାରିପାରେ ନାହିଁ । ଏହାକୁ ଆତ୍ମ-ଜ୍ଞାନ କହନ୍ତି ।

ଆଫ୍ରିକାରୁ ଆସି ବାପୁଜୀ କଲିକତାରେ ପହଞ୍ଚିଲେ । ସେଠାରୁ ବୋମ୍ବେଇ ଯାତ୍ରା କଲେ । ବାଟରେ ଏଲାହାବାଦଠାରେ ଓହ୍ଲାଇ 'ପାୟୋନିୟର' ସମ୍ବାଦପତ୍ରର ସମ୍ପାଦକଙ୍କ ସଙ୍ଗେ ସାକ୍ଷାତ୍ କଲେ ।

ଦକ୍ଷିଣ ଅଫ୍ରିକାର ହାଲ୍ କପରି ଏହି ସମ୍ବାଦ-ପତ୍ରରେ ପ୍ରକାଶିତ ହେବ ତାହା ସାକ୍ଷାତ୍‌ର ଲକ୍ଷ୍ୟ ଥିଲା । ତତ୍ପରେ ରାଜକୋଟଠାରେ ପଚାଶ ଖଣ୍ଡିଏ ବହିରେ ଅଫ୍ରିକାର ଅବସ୍ଥା ବର୍ଣ୍ଣନା କଲେ । ଏହାର ମଲାଟ ନେଳିଆ ହୋଇଥିବାରୁ ଲୋକେ ଏହାକୁ 'ନୀଳ ପୁସ୍ତିକା' କହିଲେ । ଏହି ବହି ଗୃହିଅଡ଼େ ପଠା ଯାଇଥିଲା । ରାଜକୋଟ ପିଲାମାନେ ଏ ବହି ବାନ୍ଧି ଠିକଣା ପ୍ରଭୃତି ଲେଖି ମୁଖ୍ୟ ମୁଖ୍ୟ ଲୋକମାନଙ୍କ ପାଖକୁ ଡାକରେ ପଠାଇ ଥିଲେ । ପିଲାମାନଙ୍କୁ ସ୍ୱେଚ୍ଛାସେବକପଣ ଶିଖାଇବା ପାଇଁ ବାପୁଜୀ ସେମାନଙ୍କ ହାତରେ ଏ କାମ କରାଇ ନେଇଥିଲେ । ଏ ସମୟରେ ବୋମ୍ବେଇରେ ପ୍ଲେଗ ରୋଗ ବ୍ୟାପିଥିଲା । ଏ ମରକ ରାଜକୋଟକୁ କପରି ନ ବ୍ୟାପିବ ତାହାର ପ୍ରତିକାର ଚିନ୍ତାକରି ସେ ଗୋଟିଏ କମିଟି ଗଢିଥିଲେ । ପ୍ରତି ଗଳି, ଘର ଓ ପାଇଖାନା କପରି ସଫା ସୁତୁରା ରହିବ ତାହା ଦେଖିବା ଏହି କମିଟିର କାର୍ଯ୍ୟ ଥିଲା । ବାପୁଜୀ ନିଜେ ଅନେକଙ୍କର ପାଇଖାନା ଦେଖି ଅଛନ୍ତି । ଯେଉଁମାନେ ବଡ ଲୋକ ବୋଲାଉ ଥିଲେ ସେମାନଙ୍କ ପାଇଖାନା ଓ ଘରଦ୍ୱାର ବେଶୀ କଦର୍ଯ୍ୟ ଥିଲା; ହେବାରଂ ମଧ୍ୟ କଥା । ବଡଲୋକମାନେ ନିଜେ ପରିଶ୍ରମ ନ କରି ଚାକରବାକରଙ୍କ ଉପରେ ସବୁ ନିର୍ଭର କରୁଥିଲେ । କିନ୍ତୁ ଦରିଦ୍ର ଲୋକେ ନିଜେ ପରିଶ୍ରମ କରନ୍ତି । ସେମାନଙ୍କ ଘରଦ୍ୱାର ସଫା ସୁତୁରା ନ ରହିବ କାହିଁକି ?

ରାଜକୋଟରୁ ବାପୁଜୀ ବୋମ୍ବେଇ ଗଲେ । ସେଠାରୁ ସେ ଭଉଣୀଙ୍କୁ ଦେଖିବାକୁ ଗଲେ । ତାଙ୍କ ଭଉଣୀଇ ସେତେବେଳେ ଅସୁସ୍ଥ ଥିଲେ । ଭଉଣୀଇଙ୍କର ରୋଗ କଠିନ ଓ ଆର୍ଥିକ ଅବସ୍ଥା ଶୋଚନୀୟ ଥିଲା । ଚିକିତ୍ସାର ସୁବିଧା ନୋହୁଥିବାରୁ ସେ ଭଉଣୀ ଭଉଣୀଙ୍କୁ ରାଜକୋଟର ଆପଣା ଘରକୁ ନେଲେ । ସେଠାରେ

ଲୋକଙ୍କର ବହୁତ ସେବା ଶୁଶ୍ରୂଷା ଆନନ୍ଦରେ କରୁଥିଲେ । ପିତା ଅସୁସ୍ଥ ଥିଲାବେଳେ ପିଲାଦିନେ ତାହାଙ୍କର ସେବା ଶୁଶ୍ରୂଷା କରି ବାପୁଜୀ ଏହିଁରେ ଅଭ୍ୟସ୍ତ ହୋଇ ପଡ଼ିଥିଲେ । ଏବେ କୁଣ୍ଠିତ ହୁଅନ୍ତେ କାହିଁକି ? Charrty begins at home ଯେ ଆପଣାର ପରିବାରର ଲୋକଙ୍କୁ ସେବା କରିବାକୁ ଶିଖି ନାହିଁ ସେ ପରର ସେବା କରି ପାରିବ ନାହିଁ, ଏଣୁ ସଭାରେ ମନ ଭୁଲାଣିଆ ବକ୍ତୃତା ଦେଲେ ବା ସମ୍ବାଦପତ୍ରରେ 'ହାତୀ ଛଡ଼ ଦେବି' କହିଲେ ସେ ଶ୍ରେଷ୍ଠ ଦେଶଭକ୍ତ ନୋହେ ଆପଣା ଘରବାରଟିକୁ ସୁଖଶାନ୍ତିରେ ଚଳାଉଥିବା ବ୍ୟକ୍ତି ପ୍ରକୃତ ଦେଶଭକ୍ତ ।

ବାପୁଜୀ ପୁନା ଯାଇଥିଲେ । ସେଠାରେ ଲୋକମାନ୍ୟ ତିଲକ, ଗୋଖଲେ ଓ ଅଧ୍ୟାପକ ରାମକୃଷ୍ଣ ଭଣ୍ଡାରକାର ପ୍ରମୁଖ ନେତାମାନେ ବାପୁଜୀଙ୍କୁ ଆଫ୍ରିକାର ଆନ୍ଦୋଳନ ପାଇଁ ସହାନୁଭୂତିର ପ୍ରତିଶ୍ରୁତି ଦେଲେ । ମାନ୍ଦ୍ରାଜ ଗଲେ ସେଠାରେ ସୁବ୍ରହ୍ମଣ୍ୟ ଆୟାର ପ୍ରମୁଖ ନେତାମାନେ ତାଙ୍କ କାର୍ଯ୍ୟର ଗୁରୁତ୍ୱ ଉପଲବ୍ଧି କଲେ । କିନ୍ତୁ କଲିକତାର କୌଣସି ବଙ୍ଗାଳୀ ସମ୍ବାଦ-ପତ୍ରର ସମ୍ପାଦକ ବା ନେତା ସୁରେନ୍ଦ୍ରନାଥ ବନ୍ଦୋପାଧ୍ୟାୟଙ୍କଠାରୁ କୌଣସି ସହାନୁଭୂତି ପାଇ ନ ଥିଲେ, ଅଥଚ ଷ୍ଟେଟ୍ସମ୍ୟାନ ଓ ଇଂଲିଶମ୍ୟାନର ସମ୍ପାଦକମାନେ ତାହାଙ୍କଠାରୁ ଆଫ୍ରିକାରେ ଭାରତୀୟମାନଙ୍କ ଅବସ୍ଥା ଶୁଣି ନିଜ ନିଜ କାଗଜମାନଙ୍କରେ ଆଲୋଚନା ଚଳାଇ ଥିଲେ ।

କଲିକତାରେ ଥିବାବେଳେ ବାପୁଜୀଙ୍କୁ ଦକ୍ଷିଣ ଆଫ୍ରିକାରୁ ଡାକରା ଆସିଲା । ସେ ପିଲାପିଲିଙ୍କୁ ସଙ୍ଗରେ ନେଇ ଆଫ୍ରିକା ଯାତ୍ରା କଲେ । ଜାହାଜରେ ଯାଉ ଯାଉ ପ୍ରବଳ ଝଡ଼ ହୋଇଥିଲା । ପ୍ରକୃତିର ଏହି ଝଡ଼ ଭବିଷ୍ୟତ୍ କୃତ୍ରିମ ଝଡ଼ର ସୂଚନା ଦେଉଥିଲା । କିନ୍ତୁ

ବାପୁଜୀ ଏସବୁବେଳେ ବୁଝିପାରି ନ ଥିଲେ । ବୁଝିଥିଲେ ମଧ୍ୟ ସେ ଟିକିଏ କାତର ହୋଇ ନ ଥାଆନ୍ତେ । ଝଡ଼ବେଳେ ସବୁ ଯାତ୍ରୀ ପ୍ରାଣ ଭୟରେ ଅଧୀର ହେଲେ । କିନ୍ତୁ ତାହାଙ୍କ ହୃଦୟରେ ତିଳେ ମାତ୍ର ଭୟର ଚିହ୍ନ ନ ଥାଏ । ଚବିଶ ଘଣ୍ଟା ଉତ୍ତାରେ ଝଡ଼ ଚାଲିଗଲା, ଶୁଣି ସମସ୍ତେ ଆନନ୍ଦ-ଉଲ୍ଲାସରେ ମାତିଲେ । ଝଡ଼ବେଳେ ସମସ୍ତେ ଏକପ୍ରାଣ ହୋଇ ପଡ଼ିଥିଲେ । ଭେଦାଭେଦ କିଛି ନ ଥିଲା । ସମସ୍ତଙ୍କ ମୁଖରେ "ନାହି" "ନାହି" ରବ । ଝଡ଼ ଚାଲିଗଲା ଆନନ୍ଦ ଆସିଲା । ବିପଦର ଅନ୍ୟ ପାଖରେ ସୁଖ ଶାନ୍ତି ଥାଏ, ଏ କଥା ପ୍ରକୃତିର ଲୀଳାରୁ ସାଧାରଣ ମନୁଷ୍ୟ ବୁଝିପାରେ ନାହିଁ ।

ଜାହାଜ ଡରବାନ ବନ୍ଦରରେ ଲାଗିଲା । କିନ୍ତୁ ଯାତ୍ରୀମାନଙ୍କୁ ଜାହାଜରୁ ଓହ୍ଲାଇବା ପାଇଁ ଅନୁମତି ଦିଆଗଲା ନାହିଁ । ବୋମ୍ବେଇରେ ପ୍ଲେଗ ଜ୍ୱର ଥିବାରୁ ସଂକ୍ରାମକ ରୋଗର ଜୀବାଣୁ ଜାହାଜରେ ଆସି-ପାରିଥିବା ବୋଲି ଗୋଟିଏ ଛଳନା ପ୍ରକାଶ କରାଗଲା । ତେଇଶି ଦିନ ପର୍ଯ୍ୟନ୍ତ ଜୀବାଣୁ ପ୍ରକାଶ ପାଏ ନାହିଁ, ଏଣୁ ବୋମ୍ବେଇ ଛାଡ଼ିବା ଦିନଠାରୁ ତେଇଶି ଦିନ ପୂରିବାକୁ ବାକି ଥିବା ପାଞ୍ଚଦିନ ତକ ବନ୍ଦରରେ ପଡ଼ି ରହିବ । ଉପରେ ଡାକ୍ତର ଆସି ପରୀକ୍ଷା କଲେ ସଂକ୍ରାମକ ଜୀବାଣୁ ନ ଥିବାର ପ୍ରମାଣ ମିଳିଲେ ଯାତ୍ରୀମାନେ ଓହ୍ଲାଇ ପାରିବେ । ଏହି ପାଞ୍ଚଦିନ ମଧ୍ୟରେ ଫେରିଯିବା ପାଇଁ କେତେକ ଗୋରା ବାପୁଜୀଙ୍କୁ ଉପଦେଶ ଦେଇ, ନ ଗଲେ ଭବିଷ୍ୟତ୍ ଶାସ୍ତିର ଧମକ ଦେଉ ଥାଆନ୍ତି । ଏହାର କାରଣ--ଭାରତର ସମ୍ବାଦ-ପତ୍ରମାନଙ୍କରେ ପ୍ରକାଶିତ ଆଫ୍ରିକାର ଅବସ୍ଥା । ଗୋରାମାନଙ୍କ ଏପରି କାର୍ଯ୍ୟକୁ ଓକିଲ ମି: ଲାଟନ ଜନ୍ଦାବାଦ କରୁ ଥାଆନ୍ତି । ତେଇଶିଦିନ ପୂରିବାରୁ ଯାତ୍ରୀମାନେ ଓହ୍ଲାଇଲେ । ପୂର୍ବରୁ ମି: ଏସକୋମ୍ ସାହେବ ମନ୍ତ୍ରୀ ହେଲେ ବାପୁଜୀଙ୍କୁ ଓ ତାଙ୍କ

ପରିବାରଙ୍କୁ ଜାହାଜରୁ ଓହ୍ଲାଇବା ପାଇଁ କପ୍ତାନଙ୍କ ପାଖକୁ ଖବର ପଠାଇଥିଲେ । କାରଣ, ତାଙ୍କ ବିରୁଦ୍ଧରେ ଏପରି ଚକ୍ରାନ୍ତ ଚାଲିଥିଲା ଯେ, ଦିନବେଳେ ସହରରେ ପହଞ୍ଚି ହୋଇ ଜୀବନ ହରାଇ ଥାଆନ୍ତେ । ତତ୍ପରେ ମି: ଲଟନ ସଙ୍ଗେ ପୂର୍ବରୁ ଆସିଗଲେ । ବାପୁଜୀଙ୍କ ପତ୍ନୀ ଓ ପିଲାମାନେ ଗାଡ଼ିରେ ଯାଇ ରୁସ୍ତମଜୀ ଶେଠଙ୍କ ଘରେ ନିରାପଦରେ ପହଞ୍ଚିଲେ । ଲଟନ୍ ଓ ବାପୁଜୀ ଚାଲି ଚାଲି ଗଲେ । ବାଟରେ "ଗାନ୍ଧୀ", "ଗାନ୍ଧୀ" ଡାକ ପକାଇ ଟୋକା ଟୋକାମାନେ ରୁଣ୍ଡ ହୋଇ ସଙ୍ଗେ ସଙ୍ଗେ ଚାଲିଲେ । ସେମାନଙ୍କ ଦଳ ଏପରି ବଢ଼ିଲା ଯେ ବାପୁଜୀ ଲଟନଙ୍କ ଠାରୁ ଗହଳିରେ ଅନ୍ତର ହୋଇଗଲେ । ଟୋକାମାନେ ଟେକାପଥର ମାଡ଼ କଲେ । ସେତିକିବେଳେ ପୁଲିଶର ବଡ଼ ସାହେବଙ୍କ ପତ୍ନୀ **(Mrs. Alexander)** ସେ ବାଟେ ଯାଉଥିଲେ । ସେ ବାପୁଜୀଙ୍କ ପାଖକୁ ଦୌଡ଼ି ଯାଇ ଛତା ଟେକି ଆବରଣ କରି ରଖିଲେ । ଏ ଭିତରେ କେହି ପୁଲିଶରେ ଖବର ଦେଇ ଥିବାରୁ ପୁଲିସ ସୁପରିଣ୍ଟେଣ୍ଡେଣ୍ଟ ଫଉଜ ଧରି ଆସି ବାପୁଜୀଙ୍କୁ ନେଇ ଗନ୍ତବ୍ୟ ସ୍ଥାନରେ ପହଞ୍ଚାଇ ଦେଲେ । "ଯାହାକୁ ରଖିବେ ଅନନ୍ତ କି କରିବ ତାକୁ ବଳବନ୍ତ" । ଅନେକ ଗୋରା ବାପୁଜୀଙ୍କ ଜୀବନକୁ ବିପଦରୁ ରକ୍ଷା କରି ଅଛନ୍ତି । ଏଣୁ ଗୋରା ଜାତି ମାତ୍ରେ ନିନ୍ଦନୀୟ ବୋଲି ବାପୁଜୀ କେବେ କହନ୍ତି ନାହିଁ । ଗ୍ରାମର ଜଣେ ନରହତ୍ୟା କଲେ ଗ୍ରାମର ପ୍ରତ୍ୟେକ ଅଧିବାସୀ ନରଘାତକ ନୁହେ । କେତେ ଜଣ ବଙ୍ଗାଳୀ ସହାନୁଭୂତିର ପ୍ରତିଶ୍ରୁତି ଦେଲେ ନାହିଁ ବୋଲି ସବୁ ବଙ୍ଗାଳୀ ନିର୍ମମ ନୁହନ୍ତି ।

ରୁସ୍ତମଜୀଙ୍କ ଘରେ ପହଞ୍ଚିଲେ । ଘର ଭିତରେ ସବୁ ଶାନ୍ତିପୂର୍ଣ୍ଣ ଥାଏ । କିନ୍ତୁ ଗୋରାମାନେ ଘର ଚାରିପଟେ ଜମା ହୋଇ ରହି

ଥାଆନ୍ତି । "ଗାନ୍ଧୀ କାହିଁ, ଗାନ୍ଧୀ କାହିଁ" ରଡ଼ି କରୁ ଥାଆନ୍ତି । ପୁଲିସ ସାହେବ ମି: ଆଲେକଜାଣ୍ଡର ପହଞ୍ଚି ଗଲେ । ସେ ଜନତାକୁ ନ ଧମକାଇ ହସ କୌତୁକରେ ତାଙ୍କ ମନ ଭୁଲାଉ ଥାଆନ୍ତି । ଏଣେ ବାପୁଜୀଙ୍କ ପାଖକୁ ଖବର ପଠାଇଲେ, "ଲୁଚିକରି ଏ ଘରୁ ଖସି ନ ଗଲେ ନିଜ ଜୀବନ, ବନ୍ଧୁଙ୍କ ଘର ଓ ସମ୍ପତ୍ତି ବିପନ୍ନ ହେବ ।" ବାପୁଜୀ ଅଗତ୍ୟା ଛଦ୍ମ ବେଶରେ ଥାନାକୁ ଚାଲିଗଲେ । ପୁଲିସ ସାହେବ ପଳାୟନ ଜାଣି ପାରି ଜନତାକୁ କହିଲେ, "ତୁମର ଶିକାର ଖସି ଗଲାଣି, ସତ ନ ମଣିଲେ ଦୁଇଜଣ ପ୍ରତିନିଧି ବାଛ । ସେ ମୋ ସଙ୍ଗରେ ଘର ଭିତରକୁ ଯାଇ ଖୋଜିବେ ।" ଦୁଇଜଣ ପ୍ରତିନିଧି ଗଲେ । ଖୋଜି ଖୋଜି ବାପୁଜୀଙ୍କୁ ପାଇଲେ ନାହିଁ । ଗହଳ ଭାଙ୍ଗିଗଲା । ଏ ଭିତରେ ମି: ଚେମ୍ବରଲେନ ଆକ୍ରମଣକାରୀଙ୍କ ବିରୁଦ୍ଧରେ ମକଦ୍ଦମା କରିବା ପାଇଁ ବାପୁଜୀଙ୍କ ପାଖକୁ ତାର କରି ଥାଆନ୍ତି । ମି: ଏସ୍‌କମ୍ ମଧ୍ୟ ମକଦ୍ଦମା କରିବା ପାଇଁ ପ୍ରବର୍ତ୍ତାଇଲେ । କିନ୍ତୁ ବାପୁଜୀ ମକଦ୍ଦମା କରିବାକୁ ଆଦୌ ମଙ୍ଗିଲେ ନାହିଁ । ସେ କହିଲେ, "ଜନତାର କି ଅପରାଧ ? ଆଫ୍ରିକାର ଗୋରାମାନଙ୍କ ଦୁର୍ବ୍ୟବହାର ମୁଁ ଭାରତରେ ପ୍ରଚାର କରିଅଛି ବୋଲି ରଟାଇ ଦେବାରୁ ଜନତା ଉତ୍ତ୍ୟକ୍ତ ହୋଇ ଉଠିଲେ, ଅଥଚ ମୁଁ ସେଠାରେ କିଛି ଅତିରଞ୍ଜିତ କରି କହିନାହିଁ । ଏଠାରେ ସଭା ସମିତିମାନଙ୍କରେ ଯାହା ଯାହା କହୁଥିଲି ତାହା ସେଠାରେ କହିଥିଲି । ଜନତାକୁ ମତାଇବା ପାଇଁ ଯେଉଁମାନେ ମିଛ ଖବର ରଟାଇଲେ ସେମାନେ ଅପରାଧୀ । ଏ ଜନତା ସତ୍ୟ ଲୋକେ ଯେତେବେଳେ ବୁଝିବେ ସେତେବେଳେ ଅନୁତାପ କରିବେ ।" ସାହେବ ଅବାକ୍ । କ୍ରମଶଃ ଖବର କାଗଜମାନଙ୍କରେ ସତ୍ୟ ପ୍ରକାଶ ପାଇଲା, ଜନତା ଶାନ୍ତ ହେଲା । ଦୁଇ ଚାରିଦିନ ଉତ୍ତାରେ ବାପୁଜୀ ଥାନା ଛାଡ଼ି ରୁସ୍ତମଜୀଙ୍କ

ଫେରନ୍ତୁ ଅସିଲେ । କପଟ ମୁକ୍ତ ବ୍ୟବହାରରେ ବାପୁଜୀ ଉତ୍ତର ଦେଇଥିଲେ ତାହା ସ୍ୱୀକାର କରିବା ଉଚିତ । ସତ୍ୟ ତାହାଙ୍କ ହୃଦୟରେ ପ୍ରକାଶ ପାଇଥାନ୍ତି ବୋଲି ସେ ଏପରି ଉତ୍ତର ଦେଇ ପାରିଥିଲେ । ସାଧାରଣ ଲୋକ ହୃଦୟରେ ଏହା ପ୍ରକାଶ ପାଇ ନ ଥାନ୍ତି । ସେ ମକଦ୍ଦମା ଜିତି ଥାଆନ୍ତି । ଜନତା ବେଶୀ ଉତ୍ତ୍ୟକ୍ତ ହୋଇ ଥାଆନ୍ତି ।

ଘରଟିଏ ବନେଇବାକୁ ହେଲେ କାଠ, ବାଉଁଶ, ଇଟା ପ୍ରଭୃତି ଅନେକ ଉପକରଣ ଲୋଡା ହୁଏ । ସେପରି ଜୀବନକୁ ମହତ୍ କରିବାକୁ ହେଲେ ବିନୟ, ବ୍ରହ୍ମଚର୍ଯ୍ୟ ପ୍ରଭୃତି ଅନେକ କଥା ମାନି ଚଳିବାକୁ ହୁଏ । ବାପୁଜୀ ଆଫ୍ରିକାରେ ବୁଅର ଯୁଦ୍ଧରେ ଭାରତୀୟ ସ୍ୱେଚ୍ଛାସେବକ ବାହିନୀ ନେଇ ଇଂରେଜ ସରକାରଙ୍କୁ ସାହାଯ୍ୟ କଲେ । ଇଂରେଜମାନେ ସେତେବେଳେ ବୁଝିଥିଲେ ଯେ ଭାରତୀୟମାନଙ୍କ ଠାରେ ସାହସ ଅଛି । ବାପୁଜୀ ଆଫ୍ରିକା ଖ୍ରୀଷ୍ଟ ୧୯୦୧ ସାଲର କଂଗ୍ରେସ ବୈଠକ କଲିକତାରେ ବସିବା ପୂର୍ବରୁ ଭାରତକୁ ଫେରିଥିଲେ । ଫେରିବା ବେଳେ ବହୁମୂଲ୍ୟର ଉପହାର ତାହାଙ୍କୁ ଅନେକ ମିଳିଥିଲା । କିନ୍ତୁ କୌଣସି ଜିନିଷ ସଙ୍ଗରେ ନ ଆଣି ସବୁଗୁଡ଼ିକ ସାଧାରଣ ହିତକର କାର୍ଯ୍ୟରେ ବ୍ୟୟିତ ହେବା ନିମନ୍ତେ ସେ ସେଠାରେ ଦାନ କରି ଆସିଥିଲେ । ନିର୍ଲୋଭ ପଣ ଏଠାରେ ମୂର୍ତ୍ତିମନ୍ତ ହେଲାପରି ଲାଗୁଅଛି । ସେ ଭାରତକୁ ଆସି କଂଗ୍ରେସରେ ଯୋଗ ଦେବାପାଇଁ କଲିକତା ଆସିଲେ । ସେତେବେଳେ ତାଙ୍କଠାରୁ ବୟୋଜ୍ୟେଷ୍ଠ ବ୍ୟକ୍ତିମାନେ କଂଗ୍ରେସର ନେତା ଥିଲେ । ସେମାନେ କେବଳ ବାକ୍ପଟୁ ଥିଲେ । କଂଗ୍ରେସ ସେତେବେଳେ ଏକପ୍ରକାର ବିଳାସର ଅନୁଷ୍ଠାନ କହିଲେ ଚଳେ । କିନ୍ତୁ ବାପୁଜୀ ମୁଣ୍ଡର ଝାଳ ତୁଣ୍ଡରେ ପକାଇ ଆଫ୍ରିକାରେ ବହୁ ଖଟି ଖଟି ଆସିଥିଲେ ମଧ୍ୟ ତାହାଙ୍କୁ କଂଗ୍ରେସ ବୈଠକରେ ଉଚ୍ଚ ଆସନ

ଦେବା ଦୂରର କଥା । ଦକ୍ଷିଣ ଆଫ୍ରିକାର ଅବସ୍ଥା ସମ୍ବନ୍ଧରେ ବକ୍ତୃତା ଦେବା ପାଇଁ ପାଞ୍ଚ ମିନିଟରୁ ଅଧିକ ସମୟ ଦିଆଯାଇ ନ ଥିଲା । ଅଥଚ ଅନ୍ୟାନ୍ୟ ବକ୍ତାମାନେ ଘଣ୍ଟାକରୁ ଅଧିକକାଳ ବକି ଯାଉଥିଲେ । ତଥାପି ବାପୁଜୀ ଅଭିମାନକୁ ତିଳେମାତ୍ର ସ୍ଥାନ ଦେଇ ନାହାନ୍ତି । ଅଭିମାନ ଥିଲେ ଜ୍ୟେଷ୍ଠ ବ୍ୟକ୍ତି ପ୍ରତି ବିନୟ ଆଚରିବା ନୀତି ଛାଡ଼ି ନିଜର ଗୌରବ ପ୍ରତିଷ୍ଠା ପାଇଁ ଲଢ଼ି ଥାଆନ୍ତେ । ତାହା କରିଥିଲେ ତାହାଙ୍କଠାରେ ମହା-ମାନବିକତାର ବିକାଶ ଅସମ୍ଭବ ହୋଇ ଆଅନ୍ତା । ବଣରେ ମାଳତୀ ଫୁଟିଲେ ଭ୍ରମର ନିକଟରେ ଅବଶ୍ୟ ଗନ୍ଧ ପହଞ୍ଚିବ । ନିଜର ଗୁଣ ବିକାଶରେ ଯେ ଲଗିଥିବ ସେ ଆତ୍ମ-ପ୍ରତିଷ୍ଠା ପାଇଁ ଆକୁଳ ହେବ କାହିଁକି ? "କର୍ମଣ୍ୟେ ବାଧିକାରସ୍ତେ ମା ଫଳେଷୁ କଦାଚନ" —ଏହି ନୀତି ଧରି ଫଳକୁ ଅପେକ୍ଷା ନ କରି ବାପୁଜୀ କାମ କରୁଥିଲେ । କ୍ଷୁଦ୍ର ଜଣ୍ଡି ଆତ୍ମ-ପ୍ରତିଷ୍ଠାର ଅଭିଳାଷ ତାହାଙ୍କ ମନରେ ପ୍ରବେଶ କରିବାକୁ ଅବସର ପାଇ ନ ଥିଲା ।

ଜଗତରେ ଆଲୁଅ ଅନ୍ଧାର ଅଛି । ଗୁଣ ନିନ୍ଦୁକ ଯେପରି ଅଛନ୍ତି, ଗୁଣ ଗ୍ରାହକ ମଧ୍ୟ ସେପରି ଅଛନ୍ତି । ଶବର ମୋତିର ମୂଲ୍ୟ ନ ଜାଣିଲେ ମୋତିର ମୂଲ୍ୟ ନାହିଁ ବୋଲି କହିବାକୁ ହେବ ନାହିଁ । ଗୋଖଲେ ବାପୁଜୀଙ୍କ ଗୁଣ ଚିହ୍ନିଥିଲେ । ବାପୁଜୀ ବୋମ୍ବେରେ କଂଗ୍ରେସକୁ କପରି ସଜାଉଥିବେ—ଏ ଇଚ୍ଛା ତାଙ୍କ ହୃଦୟରେ ଜାଗି ଉଠିଥିଲା । ସେ ବାପୁଜୀଙ୍କୁ କହିଲେ । ମାତ୍ର ବାପୁଜୀ ଯାଇ ରାଜକୋଟରେ ବାରିଷ୍ଟରି କଲେ । ଏ ସମୟରେ ତାଙ୍କ ପୁଅ ମଣିଲାଲଙ୍କର କଳାଜ୍ୱର ହେଲା । ଡାକ୍ତର ଅଣ୍ଡା ଓ ମାଂସର ସୁରୁଆ ପଥ୍ୟର ବ୍ୟବସ୍ଥା ଦେଲେ । ସେଥିରେ ବାପୁଜୀଙ୍କର ମନ ମାନିଲା ନାହିଁ । କାରଣ, ନିଜେ ମାଂସ ଖାଇବେ ନାହିଁ ପିଲାଙ୍କୁ ଖୁଆଇବେ ନାହିଁ ବୋଲି ସଂକଳ୍ପ

କରିଥିଲେ । ଏଣୁ ନିଜେ ଶକ୍ତସୁସ୍ଥ ହେଲେ । କେବଳ ପାଣିଶମି ଦୁଧ ଓ ଫଳରସ ଖାଇବାକୁ ଦେଇ ପୁଅକୁ ଜ୍ୱରରୁ ମୁକ୍ତ କଲେ । ଅନାହାରରେ ଶବଙ୍କୁ ଅନୁସରଣ କଲେ ଅନେକ କଠିନ ରୋଗ ମୁକ୍ତ ହୁଏ ବୋଲି ଆମ ଦେଶରେ ଶୁଣାଯାଏ । ବାପୁଜୀ ନିଜ ଜୀବନରେ ଅନୁଭବ କରିଥିଲେ । ମଧ୍ୟେ ମଧ୍ୟେ ଅନାହାର କଲେ ପାଶବିକ ପ୍ରବୃତ୍ତିର ଶକ୍ତି ମଧ୍ୟ ଊଣା ପଡ଼େ । "ସର୍ବ ଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ" —କଥାକୁ ବିଶ୍ୱାସ କରି ଚଳିଲେ ଭଗବାନ ମନୁଷ୍ୟକୁ ସୁବୁଦ୍ଧି ଦେଇ ତାହାକୁ ବିପଦରୁ ଉଦ୍ଧାର କରନ୍ତି । ଭଗବାନଙ୍କଠାରେ ପୂର୍ଣ୍ଣ ବିଶ୍ୱାସ ଜନ୍ମିଲେ ମନୁଷ୍ୟ ସହଜରେ ଆତ୍ମ-ନିର୍ଭରଶୀଳ ହୋଇପାରିବ ।

[illegible] ବାପୁଜୀ ବୋମ୍ବାଇରେ ରହି ଏଥର ବାରିଷ୍ଟରି କଲେ । ଏ ସମୟରେ ଆଫ୍ରିକାରୁ ଡକରା ଆସିଲା । କାରଣ, ସେତେବେଳେ ଚେମ୍ବରଲେନ ସାହେବ ବିଲାତରୁ ଦକ୍ଷିଣ ଆଫ୍ରିକାକୁ ଆସୁଥିଲେ । ବାପୁଜୀ ଗଲେ ତାଙ୍କୁ ଭାରତୀୟମାନଙ୍କ ଗୁହାରି ଜଣାଇବେ । ବାପୁଜୀ ଦକ୍ଷିଣ ଆଫ୍ରିକାରେ ଯାଇ ପହଞ୍ଚିଲେ । କିନ୍ତୁ ଚେମ୍ବରଲେନ୍ ଗୋରାମାନଙ୍କୁ ସନ୍ତୁଷ୍ଟ କରି ସେମାନଙ୍କଠାରୁ ସାଢ଼େ ତିନିକୋଟି ପାଉଣ୍ଡ ଦାନ ନେବାକୁ ଆସିଥିଲେ । ସେ ଗୁହାରି ଶୁଣନ୍ତେ କାହିଁ ? ଉତ୍ତର ଦେଲେ, "ହଁ ତୁମର ଦାବି ଯଥାର୍ଥ, ଅସୁବିଧା ଦୂର କରିବାକୁ ଯଥାସାଧ୍ୟ ଚେଷ୍ଟା କରିବି, ମାତ୍ର ଉପନିବେଶରେ ସ୍ୱାୟତ୍ତ ଶାସନ । ସାମ୍ରାଜ୍ୟ-ଶାସନ ତହିଁରେ ହସ୍ତକ୍ଷେପ କରିପାରେ ନା । ଏଣୁ ଏଠାରେ ରହିବାକୁ ଇଚ୍ଛା ଥିଲେ ଆପଣମାନେ ଗୋରାମାନଙ୍କୁ ସନ୍ତୁଷ୍ଟ କରିବାକୁ ମଧ୍ୟ ଚେଷ୍ଟା କରନ୍ତୁ ।" ଚେମ୍ବରଲେନ୍ ସତ କଥା କହିଥିଲେ । "ଜୋର ଯାର ମୁଲକ ତା'ର" କଥାକୁ ସିଧା ନ କହି ଟିକିଏ ବଙ୍କାରେ

କହୁଥିଲେ । ଯାହା ହେଉ ସେ ନିତାନ୍ତ ମନ୍ଦ ପ୍ରକୃତିର ଲୋକ ନ ଥିଲେ ତାହାଙ୍କ କଥାରେ ଆତ୍ମା ବା ସତ୍ତ୍ୱ-ଗୁଣର ଏବଂ ଜଡ଼ ପ୍ରକୃତି ବା ତମୋଗୁଣ ପ୍ରକାଶ ପାଉଥିଲା । ତାକୁ ଯଥାର୍ଥ ବୋଲି ସ୍ୱୀକାର କରିବା ସତ୍ତ୍ୱ-ଗୁଣର ନିଦର୍ଶନ । ପ୍ରତିକାରର ଉପାୟ ନାହିଁ କହିବା ତମୋ-ଗୁଣର ପ୍ରଭାବ । ଏହି ଦ୍ୱନ୍ଦ୍ୱ ଶକ୍ତିର ଅଧୀନ ନୋହି କେବଳ ସତ୍ତ୍ୱ-ଗୁଣକୁ ଯେ ଆଶ୍ରୟ କରେ ଜଗତରେ ସେ ଏକା ମହତ୍ ହୁଏ ।

ବୁଅର ଯୁଦ୍ଧବେଳେ ଭାରତରୁ ଓ ଲଙ୍କାରୁ ଯେତେ କର୍ମଗୃହୀ ଓ ସିପାହୀ ଯାଇଥିଲେ, ସେମାନଙ୍କ ମଧ୍ୟରୁ ଅନେକ ଟ୍ରାନ୍ସଭାଲରେ ଘର କରି ରହିଥିଲେ । ଯୁଦ୍ଧରେ ଟ୍ରାନ୍ସଭାଲ ସ୍ୱରାଜ୍ୟ ହୋଇଥିବାରୁ ଦେଶ ସଜାଡ଼ିବା ଉଦ୍ଦେଶ୍ୟରେ ସେଠାରେ ଏମାନଙ୍କୁ ରହିବା ପାଇଁ ଅନୁମତି ଦିଆ ଯାଇଥିଲା । ଏଥିରେ ଦୟା ବା ଅନୁଗ୍ରହର ହେତୁ ନ ଥିଲା । ଚେମ୍ବରଲେନ ସେଠାକୁ ଯିବାର କଥା ଥିଲା । ସେଠାରେ ଭାରତୀୟମାନଙ୍କ ଦୁଃଖ ଚେମ୍ବରଲେନଙ୍କୁ ଜଣାଇବାର କଥା । ବିନାନୁମତିରେ ସେଠାରେ କେହି ପ୍ରବେଶ କରି ପାରିବେ ନାହିଁ ବୋଲି ଯୁଦ୍ଧ ଉତ୍ତାରୁ ଗୋଟିଏ ଆଇନ ହୋଇଥିଲା । ବାପୁଜୀ କୌଣସି ମତେ ଅନୁମତି ସଂଯୋଗାଡ଼ କରି ସେଠାରେ ଯାଇ ପହଞ୍ଚିଲେ । କିନ୍ତୁ ସେଠାକାର ହାକିମ ଚେମ୍ବରଲେନ୍‌ଙ୍କ ସହିତ ଦେଖା କରିବାକୁ ଅନୁମତି ଦେଲେ ନାହିଁ । ଏଥିରେ ଭାରତୀୟମାନେ ବଡ଼ ଅପମାନ ବୋଧ କଲେ । କିନ୍ତୁ ବାପୁଜୀ ଅପମାନ ବୋଧ ନ କରି ମିଃ ଗଡ଼୍ଫ୍ରେ ସାହେବଙ୍କୁ ପ୍ରତିନିଧିରୂପେ ପଠାଇବା ପାଇଁ ପରାମର୍ଶ ଦେଇଥିଲେ । ଅସମୟରେ ମହାପୁରୁଷ ଗଧ ପାଦ ଧରିଥିଲେ । ଅପମାନରେ ଦ୍ୱାର କିଳି ଘର ଭିତରେ କାନ୍ଦିଲେ ଲାଭ କଅଣ ? ଯଦି ଭାରତୀୟମାନଙ୍କ ଦୁଃଖ ଜଣାଇ ଦିଆ ନ ଯାଏ ତେବେ ସେମାନଙ୍କର କିଛି ଅଭିଯୋଗ ନାହିଁ

ବୋଲି ଚେମ୍ବରଲେନ୍ ବୁଝି ଯିବେ ।

"କ୍ରୋଧାଦ୍ ଭବତି ସମ୍ମୋହଃ ସମ୍ମୋହାତ୍ ସ୍ମୃତିବିଭ୍ରମଃ ।
ସ୍ମୃତିନାଶାଦ୍ ବୁଦ୍ଧିନାଶୋ ବୁଦ୍ଧିନାଶାତ୍ ପ୍ରଣଶ୍ୟତି ।"

କ୍ରୋଧ ଜନ୍ମିଲେ ଅନ୍ଧାର ଦିଶେ । ଅନ୍ଧାର ଦିଶିଲେ ଯେଉଁ ସବୁ ଜ୍ଞାନ ମନରେ ଥାଏ ତାହା ଆଉ ଦେଖା ଯାଏ ନାହିଁ । ପୂର୍ବ ଜ୍ଞାନ ମନରେ ନ ପଡ଼ିଲେ ବୁଦ୍ଧିର ବିଗ୍ଭର ଶକ୍ତି ରହେ ନାହିଁ । ପୂର୍ବେ କେବେ ବାଘ ଦେଖିଥିବାର ମନେ ନ ପଡ଼ିଲେ ବାଘର ଲକ୍ଷଣ ସମ୍ବନ୍ଧରେ ଜ୍ଞାନ ଆସିବ କାହୁଁ ? ଲକ୍ଷଣ-ଜ୍ଞାନ ନ ଆସିଲେ ଏବେ ଗୋଟିଏ ବାଘ ଦେଖି ଏହା ବାଘ ବୋଲି ବୁଦ୍ଧିରେ ବିଗ୍ଭର କରିବା କିପରି ? ବୁଦ୍ଧିରେ ବିଗ୍ଭର କରି ନ ପାରିଲେ ସର୍ବନାଶ ଘଟେ । ଏଣୁ ସର୍ବଦା କ୍ରୋଧ ଛାଡ଼ିବା ଉଚିତ । ବାପୁଜୀ ଯାହା ପଢ଼ିବା ବେଳେ ସତ୍ୟ ବୋଲି ମନେ କରୁଥିଲେ ତାହାକୁ ପାଳି-ବାକୁ ଯତ୍ନଶୀଳ ଥିଲେ । ଏଣୁ କ୍ରୋଧକୁ ହୃଦୟରେ ସ୍ଥାନ ଦେଉ ନ ଥିଲେ ।

ବାପୁଜୀ ବର୍ତ୍ତମାନ ଟ୍ରାନ୍ସଭାଲରେ ରହି ଭାରତୀୟମାନଙ୍କ ଦୁର୍ଦ୍ଦଶା ମୋଚନ କରିବା ପାଇଁ ମନ ବଳାଇଲେ । ସେଠାରେ ବାରିଷ୍ଟର କରିବା ପାଇଁ ଅନୁମତି ସଂଗ୍ରହ କଲେ । ଭଲ ମତରୂପେ ଗୀତା ପଢ଼ିଲେ । ତାହାଙ୍କର ଆତ୍ମ-ଦୃଷ୍ଟି ବଢ଼ିଲା । ଏଥିପୂର୍ବରୁ ମଧ୍ୟେ ମଧ୍ୟେ ତାହାଙ୍କ ହୃଦୟରେ ସ୍ୱାର୍ଥର ରେଖାପାତ ହେଉଥିଲା । ସ୍ତ୍ରୀ-ପୁତ୍ରଙ୍କର ଭବିଷ୍ୟତ ଚିନ୍ତା କରି ସେ ଦଶହଜାର ଟଙ୍କାକୁ ଜୀବନ ବୀମା କରିଥିଲେ ! ବର୍ତ୍ତମାନ ବୁଝିଲେ ଯେ ଈଶ୍ୱରଙ୍କ ଉପରେ ନିର୍ଭର ନ କରି ଭବିଷ୍ୟତ ଚିନ୍ତାରେ ଘାରି ହେବା ନିଷ୍ପ୍ରୟୋଜନ ।

ସେ ଜୀବନ ବୀମା ବନ୍ଦ କରି ଦେଲେ "ସର୍ବଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂବ୍ରଜ"—ଏହି ବାଣୀ ତାହାଙ୍କ ହୃଦୟରୁ ଉତ୍ଥିତ ସଦା ବାଜି ଉଠିଲା ।

ଟ୍ରାନ୍ସଭାଲରେ ପଶିବା ପାଇଁ ଅନୁମତି ଦେବାଲାଗି ଗୋଟିଏ ଛାଡ଼ ବିଭାଗ ଥିଲା । ଏହି ବିଭାଗର କର୍ମଚାରୀମାନଙ୍କର ଡେରା ଜୋହାନ୍ସବର୍ଗରେ ଥିଲା । ସେମାନେ ଭାରତୀୟ, ଚୀନବାସୀ ଓ ଅନ୍ୟାନ୍ୟ କଳା ଲୋକଙ୍କୁ ରକ୍ଷା କରିବା ଠେଣିକି ଥାଉ, ସେମାନଙ୍କୁ ପେଷିବାରେ ଲାଗିଥିଲେ । ଟ୍ରାନ୍ସଭାଲକୁ ପଶିବାକୁ ଯେଉଁମାନଙ୍କର ଅଧିକାର ଥିଲା ସେମାନଙ୍କୁ ଅନୁମତି ମିଳୁ ନ ଥିଲା । ଯେଉଁମାନଙ୍କର ଅଧିକାର ନ ଥିଲା ସେମାନଙ୍କ ଠାରୁ ଟ ୧୫୦୦୧ ଙ୍କା ପର୍ଯ୍ୟନ୍ତ ଲାଞ୍ଚ ନେଇ ସେମାନଙ୍କୁ ଛାଡ଼-ବିଭାଗ ଅନୁମତି ଦେଉଥିଲା । ଏହାର ପ୍ରତିକାର କରିବା ପାଇଁ ବାପୁଜୀ ଲାଗି ଗଲେ । ସେ ପ୍ରଥମେ ପ୍ରମାଣ ସଂଗ୍ରହରେ ଲାଗି ଗଲେ । ପ୍ରମାଣ ମିଳିବାରୁ ପୁଲିସ-କମିଶନରଙ୍କ ପାଖକୁ ଗଲେ । ସେ ବିଚାରୀ ବଡ଼ ଭଦ୍ରଲୋକ । ସମସ୍ତ କଥା ମନ ଦେଇ ଶୁଣିଲେ । ପ୍ରମାଣ ନେଲେ । ସାକ୍ଷୀ ଇଜାହାର ନିଜ ହାତରେ ଲେଖି ନେଲେ ଏବଂ ବାପୁଜୀଙ୍କ କଥାରେ ବିଶ୍ୱାସ କଲେ । କିନ୍ତୁ ଗୋରା ଲୋକଙ୍କୁ ଦଣ୍ଡ ଦିଆଇବା କାଠିକର କଥା ଥିଲା । ତଥାପି ଅପରାଧୀମାନଙ୍କୁ ଗିରଫ୍ କରିବା ପାଇଁ ଲେଖିମାନ ଚେଷ୍ଟା କରିବେ ନାହିଁ ବୋଲି ପୁଲିସ-କମିଶନର ଜବାବ ଦେଇ ଥିଲେ ।

ଛାଡ଼ ବିଭାଗର କର୍ମଚାରୀମାନଙ୍କର ଖୁବ୍ ପ୍ରତାପ ଥିଲେ । ବାପୁଜୀଙ୍କ ଅଫିସ୍‌ପର ପାଖରେ ବୁଲି ବୁଲି ସବୁ କଥା ଜାଣୁଥାଆନ୍ତି ।

ବାପୁଜୀ ପୁଲିସ-କମିଶନରଙ୍କ ପାଖକୁ ଯିବା ଆସିବା କଥା ଜାଣି ଛାଉଡ଼- ବାହାରର କର୍ମୀଗୃହମାନଙ୍କୁ ଗୁପ୍ତଚରମାନେ କହୁଥିଲେ । ଦୁଇଜଣ କର୍ମୀଙ୍କୁ ଗିରଫ କରିବା ପାଇଁ ହୁକୁମ ବାହାରିଥିଲା । ସେଥିରୁ ଜଣେ ଫେରାର ହେଲେ ମଧ୍ୟ ସେ ଧରା ହୋଇ ଆସିଲା । ଦୁଇ ଜଣଙ୍କର ବିଚାର ହେଲା । ଜୁରିମାନେ ସେମାନଙ୍କୁ ଖଲାସ ଦେଲେ । କିନ୍ତୁ ଦୋଷ ଧନ୍ଦାରେ ପଡ଼ି ଯାଇ ଥିବାରୁ ସରକାର ସେମାନଙ୍କୁ ଅଳ ଚାକିରୀ ଦେଲେ ନାହିଁ । ଏଣୁ ଲାଞ୍ଚ ନେବାଠା ଦୂରେଇ ଗଲା ଓ ବାପୁଜୀଙ୍କ ପ୍ରତିଷ୍ଠା ବଢି ଯାଇଥିଲା । ଉକ୍ତ ଦୁଇ ଜଣ କର୍ମୀଙ୍କୁ ଚାକିରୀ ଦେବାଇ ବାପୁଜୀଙ୍କ ସାହାଯ୍ୟ ଲୋଡ଼ିଲେ ଓ ତାଙ୍କ ସାହାଯ୍ୟରେ ମୁନିସିପାଲିଟିରେ ଚାକିରୀ ପାଇଲେ । ଫଳରେ ବାପୁଜୀ ଅନ୍ୟାନ୍ୟ କର୍ମୀଙ୍କ ଶ୍ରଦ୍ଧା ଓ ଭକ୍ତି ଭାଜନ ହେଲେ । ଏଠାରେ ବାପୁଜୀ ବୁଝି ଥିଲେ ଯେ, ସାଧୁ କାମ ପ୍ରତି ଆଦର ଓ ପାପ କାମ ପାଇଁ ଘୃଣା କରିବା ଉଚିତ । କିନ୍ତୁ ପାପୀକୁ ଘୃଣା କରିବା ଉଚିତ ନୁହେ । ପାପୀକୁ ଘୃଣା କଲେ ତାହାକୁ ସୁପଥକୁ ଫେରାଇ ଆଣିବ କିପରି ? କେବଳ ଗୋଟିଏ ଘଟଣାରୁ ନୁହେ । ଅନେକ ଘଟଣାରୁ ବାପୁଜୀ ବୁଝିଥିଲେ ଯେ, କାହାରି ସହିତ କୌଣସି ସମୟରେ କଳହ ହେଲେ ମଧ୍ୟ କଳି ବେଳ ଗଡ଼ି ଗଲେ ତାହା ପାଶୋରି ଦେବା ଉଚିତ । ନିଜ ସ୍ତ୍ରୀଙ୍କ ସହିତ ତାହାଙ୍କର ଅନେକ ସମୟରେ କଳି ଲାଗୁଥିଲା । ପର ମୁହୂର୍ତ୍ତରେ ମିଳିମିଶି ଯାଉଥିଲେ । ଏହା ଯଦି ପରିବାରରେ ଘଟୁଥାଏ ତେବେ ତାହା ସବୁ କ୍ଷେତ୍ରରେ ସମ୍ଭବପର ନୋହିବ କାହିଁକି ? ସତ୍ୟ ଦେଶକାଳପାତ୍ର-ଭେଦ ମାନେ ନାହିଁ । ଏଣୁ ସତ୍ୟକୁ ଜୀବନରେ ସବୁ କ୍ଷେତ୍ରରେ ବାପୁଜୀ ପରୀକ୍ଷା କରୁ- ଥିଲେ ।

ବାପୁଜୀ ନିଜ ସ୍ତ୍ରୀଙ୍କର କୌଣସି ଭୁଲ କାର୍ଯ୍ୟ କରି ତାହାଙ୍କୁ ଅନେକ ପ୍ରକାର ଦଣ୍ଡ ଦିଅନ୍ତି । କିନ୍ତୁ ସ୍ତ୍ରୀ ସବୁ ସହି ଯିବାରୁ ବାପୁଜୀଙ୍କ ମନରେ ପରେ ଅନୁତାପ ଆସେ । ଏହିପରି ଅନେକ ଅନୁଭବରେ ବୁଝିଥିଲେ ଯେ, ମାଡ଼ ଖାଇ ପ୍ରତିହିଂସାର ଉପାୟ ନ ପାଇଲେ ଯଥାର୍ଥ ମନୁଷ୍ୟତାର ବିକାଶ ଘଟେ । ଏଣୁ ହିଂସା ବିରୁ ଅନ୍ୟାୟର ପ୍ରତିରୋଧ କରିବା ଅପେକ୍ଷା ଅହିଂସାରେ କରିବା ଶ୍ରେୟସ୍କର ।

ବାପୁଜୀ ଦକ୍ଷିଣ ଆଫ୍ରିକାରେ ଥିବା ବେଳେ ଖ୍ରୀଷ୍ଟିୟାନ ମୁସଲମାନ ପ୍ରଭୃତି ନାନାପ୍ରକାର ସମ୍ପ୍ରଦାୟର ଲୋକଙ୍କ ସହିତ ବନ୍ଧୁତା କରିଥିଲେ । ବୁଅର ଯୁଦ୍ଧ ଲାଗିବା ବେଳେ ନିଜ ଘରେ ଜାଗା ନ ଥିଲେ ମଧ୍ୟ ଜୋହାନ୍ସବର୍ଗରୁ ଆସିଥିବା ଦୁଇଜଣ ଇଂରେଜଙ୍କୁ ନିଜ ଘରେ ଆଶ୍ରୟ ଦେଇ ଥିଲେ । ସେଥିମଧ୍ୟରୁ ଜଣେ ମିଃ କାଲନ୍ । ଏ ଦୁହେଁ ରହିବା ଫଳରେ ବାପୁଜୀଙ୍କ ସ୍ତ୍ରୀ ବହୁତ ହଇରାଣ ଭୋଗି-ଥିଲେ । ନିଜ ପରିବାରର ଲୋକ ଭଳି ଏହି ଦୁଇ ଇଂରେଜ ବନ୍ଧୁ ବାପୁଜୀଙ୍କ ଘରେ ଥିଲେ । ଘର ଭିତରର ଚାଲିଚଳନ ଭାରତୀୟ ଢଙ୍ଗର ଥିଲେ ମଧ୍ୟ ଇଂରେଜ ବନ୍ଧୁମାନେ କିଛି ଅସୁବିଧା ଭୋଗି ନାହାନ୍ତି । ତାପରେ ବାପୁଜୀ ଜଣେ ଟାଇପିଷ୍ଟ ଲୋଡ଼ା କଲେ । କୁମାରୀ ଡିକ୍ ନାମ୍ନୀ ଜଣେ ସ୍କଟଲଣ୍ଡବାସିନୀ ମିଳିଗଲେ । ସେ ଅଳ୍ପଦିନ ମଧ୍ୟରେ ବାପୁଜୀଙ୍କ ଝିଅ ବା ଭଉଣୀ ପରି ହୋଇ ଗଲେ । ସେ ବିବାହିତା ହୋଇ ଯିବା ପରେ ମଧ୍ୟ ବାପୁଜୀଙ୍କ ସମ୍ପର୍କ ତୁଟାଇ ନ ଥିଲେ । ତାପରେ କୁମାରୀ ଶ୍ଲେସିନ୍ ଟାଇପ୍ କରିବା ପାଇଁ ରହିଲେ । ସେ ଚାକିରୀ କରି ଅର୍ଥୋପାର୍ଜନ କରିବା ପାଇଁ ରହି ନ ଥିଲେ—କେବଳ ଅଭିଜ୍ଞତା ଅର୍ଜନ କରିବା ପାଇଁ ରହିଥିଲେ ।

ବାପୁଜୀଙ୍କ ଆଦର୍ଶରେ ସେ ଏପରି ମୁଗ୍‌ଧ ହୋଇ ପଡ଼ିଥିଲେ ଯେ, ସେ କହୁଥିଲେ, "ଦରମା ନେବା ପାଇଁ ମୁଁ ଆପଣଙ୍କ ପାଖକୁ ଆସି ନାହିଁ। ଆପଣଙ୍କ ଆଦର୍ଶ ମୋତେ ଭଲ ଲାଗେ ବୋଲି ମୁଁ ଆପଣଙ୍କ ପାଖକୁ କାମ କରିବାକୁ ଆସେ। "ଆଫ୍ରିକାରେ ସତ୍ୟାଗ୍ରହ ଆନ୍ଦୋଳନ ଚାଲିବା ବେଳେ ଏହି କୁମାରୀ ବହୁତ ସାହାଯ୍ୟ କରିଥିଲେ। ଏହି-ପରି ବିଭିନ୍ନ ସମ୍ପ୍ରଦାୟର ଲୋକଙ୍କ ସଂସ୍ପର୍ଶରେ ଆସିଲେ ମଧ୍ୟ ବାପୁଜୀ ତାହାର ଆଗୁର ବ୍ୟବହାରକୁ ଘୃଣା କରୁ ନ ଥିଲେ କିମ୍ବା ଅନୁକରଣ କରୁ ନ ଥିଲେ। ହିନ୍ଦୁର ଆଗୁର ବ୍ୟବହାର ଓ ସରଳ ଜୀବନ ଯାପନ ପ୍ରଣାଳୀକୁ ଅକ୍ଷୁର୍ଣ୍ଣ ରଖି ଥିଲେ। ଏଥିପାଇଁ ସମସ୍ତେ ମୁଗ୍‌ଧ ହେଉଥିଲେ। "ସ୍ୱଧର୍ମେ ନିଧନେ। ଶ୍ରେୟଃ ପରଧର୍ମୋ ଭୟାବହଃ।"

ଦକ୍ଷିଣ ଆଫ୍ରିକାରେ ଭାରତୀୟମାନଙ୍କ ପ୍ରତି ଅନ୍ତ୍ୟଜ ବା ଅସ୍ପୃଶ୍ୟ ଅର୍ଥରେ 'କୁଲି' ଆଖ୍ୟା ଦିଆ ହୋଇଥିଲା। କୁଲିମାନେ ଯେଉଁଠାରେ ରହୁ ଥିଲେ ତାହାକୁ 'କୁଲିବସ୍ତି' କହୁ ଥିଲେ। ଜୋହାନସବର୍ଗରେ ମଧ୍ୟ ଗୋଟିଏ କୁଲିବସ୍ତି ଥିଲା। କିନ୍ତୁ ଅନ୍ୟାନ୍ୟ କୁଲି ବସ୍ତିରେ ପ୍ରଜାଙ୍କର ଯେପରି ସ୍ଥିତିବାନ୍ ସ୍ୱତ୍ୱ ଥିଲା ଜୋହାନସ-ବର୍ଗର କୁଲିବସ୍ତିରେ ସେପରି ନ ଥିଲା। ଭାରତୀୟମାନେ ୯୯ବର୍ଷର ମିଆଦ ପଟା ଖଣ୍ଡେ ଖଣ୍ଡେ ପାଇ ଥିଲେ। ଲୋକ ସଂଖ୍ୟା ବଢୁଥିଲା। କିନ୍ତୁ ବସ୍ତିର ଆୟତନ ବଢୁ ନ ଥିଲା। ଏଣୁ ବସ୍ତିଟି ଲୋକରେ ଖୁନ୍ଦି ହୋଇ ଯାଇଥିଲା। ଲୋକଙ୍କ ସ୍ୱାସ୍ଥ୍ୟରକ୍ଷା ପାଇଁ ମ୍ୟୁନିସିପାଲିଟି କିଛି ଯତ୍ନ କରୁ ନ ଥିଲା। ଭଲ ରାସ୍ତା ତିଆରି କରାଇବା କିମ୍ବା ଆଲୁଅ ଦେବା ପାଇଁ ମ୍ୟୁନିସିପାଲିଟିର ଆଦୌ ନଜର ନ ଥାଏ। କେବଳ ପାଇଖାନାଗୁଡ଼ିକ ସଫା କରାଇ ଦିଏ। କାରଣ ଲୋକଙ୍କ ମଙ୍ଗଳ ପ୍ରତି ସେମାନଙ୍କର ଆସ୍ଥା ନ ଥିଲା। ଲୋକମାନେ ସ୍ୱାସ୍ଥ୍ୟରକ୍ଷାର ବିଧି

ସମ୍ବନ୍ଧରେ ସନ୍ଦେହ ଅଙ୍କ ଥିଲେ । ଏଣୁ ବସ୍ତିଟି ଅସ୍ୱାସ୍ଥ୍ୟକର ହୋଇ ଥିଲା । ମ୍ୟୁନିସିପାଲିଟି ଅବସ୍ଥାର ଉନ୍ନତି କରିବା ପାଇଁ ନ ବାହୁଡ଼ି ବସ୍ତିଟି ଏକାବେଳକେ ଉଠାଇ ଦେବା ପାଇଁ ସ୍ଥିର କରିଥିଲା । ସେଥିପାଇଁ ସ୍ଥାନୀୟ ଶାସନ-ସଭାରୁ ହୁକୁମ ଆଣିଥିଲେ । କ୍ଷତିପୂରଣ ପାଇବା ପାଇଁ ବାସିନ୍ଦାମାନଙ୍କର ଦାବି ଥିଲା । ଦଖଲ-ଦାବି ଶୁଣିବା ପାଇଁ ଗୋଟିଏ କଚେରୀ ମଧ୍ୟ ଖୋଲା ହୋଇଥିଲା । ମ୍ୟୁନିସିପାଲିଟି ଯାହା କ୍ଷତିପୂରଣ ଯାଚୁଥିଲା ତାହାଠାରୁ ଅଧିକ ପାଇବା ପାଇଁ ଯଦି ହାକିମ ବିବେଚନା କରୁଥିଲେ ତେବେ ମକଦ୍ଦମା-ଖର୍ଚ୍ଚ ପ୍ରଜା ନ ସହି ମ୍ୟୁନିସିପାଲିଟି ସହୁଥିଲା । ବାପୁଜୀ କୁଲିମାନଙ୍କ ପାଇଁ ମକଦ୍ଦମା ଲଢ଼ିଲେ । ପ୍ରତ୍ୟେକ ମକଦ୍ଦମା ପାଇଁ ଟ ୧୫୦୯ ଙ୍କା ଓ ମ୍ୟୁନିସିପାଲିଟିରୁ ଖର୍ଚ୍ଚ ପାଇଲେ ସେତିକ ଅଧିକା ନେବା ପାଇଁ ରାଜି କରି ଥିଲେ । ଏପରି ସତୁରିଟି ମକଦ୍ଦମା ଲଢ଼ି କେବଳ ଗୋଟିକରେ ହାରିଥିଲେ । କିନ୍ତୁ ଯାହା ଟଙ୍କା ପାଇଥିଲେ ସେଥିରୁ ଟ ୨୦୦୦୯ ଙ୍କା ଉଡ଼ି ଯାଇଥିଲା । କାରଣ; "ଇଣ୍ଡିୟାନ ଓପିନିୟନ" (ଭାରତୀୟ ମତ) ନାମରେ ଖଣ୍ଡିଏ କାଗଜ ବାହାରୁ ଥିଲା । ତାହାର ଖର୍ଚ୍ଚ ବାପୁଜୀ ଚଳାଉ ଥିଲେ । ସେତେବେଳେ ସେଠାରେ ଭାରତୀୟମାନେ ତାହାଙ୍କୁ ଭାଇ ନାମରେ ଡାକୁ ଥିଲେ ।

ମ୍ୟୁନିସିପାଲିଟି କୁଲିବସ୍ତି ଦଖଲ ପାଇଲେ ମଧ୍ୟ କୁଲିମାନଙ୍କୁ ବସ୍ତିରୁ ତଡ଼ି ଦିଆଯାଇ ନ ଥିଲା । କାରଣ, କ୍ଷତିପୂରଣ ଦେବା ଉପରୁ ବାସ କରି ରହିବା ପାଇଁ କୁଲିମାନଙ୍କୁ ମ୍ୟୁନିସିପାଲିଟି ଜାଗା ଦେବାର କଥା ଥିଲା । ମ୍ୟୁନିସିପାଲିଟି ଜାଗା ନ ଦେବାରୁ କୁଲିମାନେ ବସ୍ତି ଛାଡ଼ି ପାରି ନ ଥିଲେ । କ୍ଷତିପୂରଣ ଦେଇ ଥିବାରୁ ମ୍ୟୁନିସିପାଲିଟି ବସ୍ତି ପ୍ରତି ମଧ୍ୟ ପୂର୍ବାପେକ୍ଷା ଅବହେଳା କରିଥିଲା । ଫଳରେ ବସ୍ତି

ଅଧିକତର ଅସ୍ୱାସ୍ଥ୍ୟକର ହୋଇ ପଡ଼ିଥିଲା । ସେତିକିବେଳେ ସୁନାଖଣିରେ ସାଂଘାତିକ ପ୍ରକାରର ମହାମାରୀ ରୋଗର ସଞ୍ଚାର ହେଲା । ବସ୍ତିର କେତେକ କୁଲି ସେଠାରେ କାମ କରୁଥିଲେ । ସେଥିମଧ୍ୟରୁ ତେଇଶିଜଣ ରୋଗରେ ଆକ୍ରାନ୍ତ ହୋଇ ବସ୍ତିକୁ ଆସିଲେ । ବାପୁଜୀ ସମ୍ବାଦ ପାଇବା ମାତ୍ରେ ସାଇକେଲରେ ସେଠାକୁ ଚାଲି ଯାଇଥିଲେ । ଡାକ୍ତର ଉଇଲିୟମ ଗଡ଼ଫ୍ରେ ସେଠାରେ ବାରଷ୍ଟର କରୁଥିଲେ । ସେ ମଧ୍ୟ ସାହାଯ୍ୟ କରିବା ପାଇଁ ଗଲେ । ଗୋଟିଏ ଖାଲି ଘରର ଚାବି ଭାଙ୍ଗି ତହିଁରେ ସବୁ ରୋଗୀଙ୍କୁ ରଖା ଯାଇଥିଲା । ରୋଗୀଙ୍କି ଜଗି ଜଗି ସେ ଶୁଶ୍ରୂଷା କରି ବାପୁଜୀ ସେଠାରେ ରାତି କାଟିଥିଲେ । ଚାବି ଭାଙ୍ଗି ଖାଲି ଘର ଅଧିକାର କରିଥିବାରୁ-ମ୍ୟୁନିସିପାଲିଟି ବାପୁଜୀଙ୍କ ନିକଟରେ କୃତଜ୍ଞତା ପ୍ରକାଶ କରିଥିଲେ । ତତ୍ପରେ ଗୋଟିଏ ଶୂନ୍ୟ ଗୋଦାମ ଘର ବାପୁଜୀଙ୍କୁ ଛାଡ଼ି ଦେଇଥିଲେ । ଦୟାଶୀଳ ଭାରତୀୟମାନଙ୍କ ଦାନରେ ଖାଟ ପ୍ରଭୃତି କିଣା ହୋଇ ସେଠାରେ ଗୋଟିଏ ଛୋଟ ଡାକ୍ତରଖାନା ଖୋଲା ହୋଇଗଲା । ଜଣେ ଧାତ୍ରୀ ରହିଲେ । ରୋଗୀମାନଙ୍କୁ ବ୍ରାଣ୍ଡି ଖୁଆଇବାର ବ୍ୟବସ୍ଥା ହେଲା । କିନ୍ତୁ ତିନିଜଣ ରୋଗୀ ଖାଇବାକୁ ରାଜି ହେଲେ ନାହିଁ । ଧାତ୍ରୀ ନିଜେ ପାନେ ବ୍ରାଣ୍ଡି ପିଇ ଶୁଶ୍ରୂଷାକାରୀମାନଙ୍କୁ ପାନେ ପାନେ ପିଇବା ପାଇଁ ଉପଦେଶ ଦେଲେ । କିନ୍ତୁ ବାପୁଜୀ ପ୍ରଭୃତି ପିଇଲେ ନାହିଁ ! ଯେଉଁ ରୋଗୀମାନେ ଖାଇବାକୁ ନାରାଜ ଥିଲେ । ଅଗତ୍ୟା ସେମାନଙ୍କ ପାଇଁ ପୃଥକ୍ ଚିକିତ୍ସାର ବ୍ୟବସ୍ଥା ହେଲା । ବାପୁଜୀ ତିନିଜଣଙ୍କୁ ମାଟିଚିକିତ୍ସା କରି ସେମାନଙ୍କ ମଧ୍ୟରୁ ଦୁଇଜଣଙ୍କୁ ବଞ୍ଚାଇ ପାରିଥିଲେ । ଅନ୍ୟାନ୍ୟ ସମସ୍ତେ ପ୍ରାୟ ମରି ଯାଇଥିଲେ । ଧାତ୍ରୀଟି ମଧ୍ୟ କିଛିଦିନ ଭିତରେ ମହାମାରୀ ରୋଗରେ ପ୍ରାଣ ହରାଇ ଥିବା ଶୁଣା ଯାଇଥିଲା । ବାପୁଜୀ ପ୍ରଭୃତି ଅନ୍ୟ ଶୁଶ୍ରୂଷାକାରୀମାନେ ଶୁଶ୍ରୂଷା କରିବା

ଧନତକ ଅଲ୍ପାହାର ଭରି ରହି ଥିବାରୁ ସେମାନଙ୍କର କିଛି ଅନିଷ୍ଟ ଘଟି ନାହିଁ । ସେ ଯାହା ହେଉ ମନପ୍ରାଣ ଢାଳି କୌଣସି ସାଧୁ କର୍ମ କରିବା ପାଇଁ ସଂକଳ୍ପ କଲେ ସାହାଯ୍ୟରେ ଅଭାବ ଘଟେ ନାହିଁ ।

"ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂ ସ୍ତଥୈବ ଭଜାମ୍ୟହଂ ।"

ଯେ ଯେପରି କାମ କରିବାକୁ ମନ ବଳାଏ, ସେ ସେପରି ବୁଦ୍ଧି ଭଗବାନଙ୍କଠାରୁ ପାଏ । ଭଗବାନ୍ କେବଳ ବୁଦ୍ଧି ଦିଅନ୍ତି । ବୁଦ୍ଧି ଅନୁସାରେ ମନୁଷ୍ୟ ସୁଖ-ଦୁଃଖ ଭୋଗ କରେ । ଦୁଃଖ ପାଇଁ ଭଗବାନ ଦାୟୀ ନୁହନ୍ତି । "ନିଜ ଅର୍ଜିତ କର୍ମମାନ । ଭୁଞ୍ଜଇ ପ୍ରାଣୀ ସାବଧାନ ।"

ମହାମାରୀ ବ୍ୟାପିବା ସମୟରେ ଗରମ ସ୍ୱରରେ ଚିଠିମାନ ଲେଖି ଖବର କାଗଜରେ ବାପୁଜୀ ପ୍ରକାଶ କରିଥିଲେ । ଏଥିରେ ମ୍ୟୁନିସି-ପାଲଟିର ଅବହେଳା ବର୍ଣ୍ଣନା କରିଥିଲେ । ଚିଠି ପଢ଼ି ହେନେରୀ ପୋଲକ୍ ଓ ରେଭରେଣ୍ଡ ଡୋକ୍ ବାପୁଜୀଙ୍କ ପ୍ରତି ଆକୃଷ୍ଟ ହେଲେ । ସେ ଦିନଠାରୁ ସେମାନେ ବନ୍ଧୁ ହେଲେ । ମିଃ ଆଲବର୍ଟ ଭଏଷ୍ଟ ବାପୁଜୀଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ 'ଇଣ୍ଡିୟାନ ଓପିନିୟାନ୍' କାଗଜର ସମ୍ପାଦକତ୍ୱ ଗ୍ରହଣ କରିଥିଲେ ।

ମ୍ୟୁନିସିପାଲିଟି ଭାରତୀୟମାନଙ୍କ ପ୍ରତି ଅବହେଳା କରୁଥିଲା । କିନ୍ତୁ ଗୋରାମାନଙ୍କ ସ୍ୱାସ୍ଥ୍ୟ-ରକ୍ଷା ଲାଗି ଅଜସ୍ର ଟଙ୍କା ଢାଳି ଦେଉଥିଲା । ବାପୁଜୀ ମ୍ୟୁନିସିପାଲିଟିର ଗୋରାମାନଙ୍କ ପ୍ରତି ଯେଉଁ ଦରଦ ଥିଲା ତାହାକୁ ନିଜ ଚିଠିରେ ପ୍ରଶଂସା କରିଥିଲେ । ସେ ସତ୍ୟର ଉପାସକ ଥିବାରୁ ଯଥାର୍ଥ ସମାଲୋଚନା କରିଥିଲେ । ଧଳା ସଙ୍ଗେ କଳା

ଥିଲେ ତାହା କ୍ଷଣିକ ହୁଏ—କେବଳ କଳା ବା ଧଳାର ସୌନ୍ଦର୍ଯ୍ୟ କେହି ବୁଝନ୍ତି ନାହିଁ । ଖାଲି ଦୋଷ ଦେଖାଇ ଥିଲେ ତାହାଙ୍କ ପ୍ରତି ତାହାର ହୃଦୟଗ୍ରାହୀ ହୋଇ ନ ଥାଆନ୍ତା । ତୁଳନାମୂଳକ ହୋଇ ଥିବାରୁ ଅନେକଙ୍କର ପ୍ରାଣକୁ ସ୍ପର୍ଶ କରିଥିଲା ।

ସହରର କିଛି ଦୂରରେ ତମ୍ବୁ ପକାଇ ଘର କରା ଗଲା । ବସ୍ତିରୁ କୁଲିମାନେ ଯାଇ ସେଠାରେ ବାସ କଲେ । ବସ୍ତିଟି ପୋଡ଼ାଇ ଦିଆ ଗଲା । ଉପୃରେ ବାପୁଜୀ ମି: ଜୁଏଷ୍ଟଙ୍କଠାରୁ ଚିଠି ପାଇଲେ ଯେ 'ଇଣ୍ଡିୟାନ ଓପିନିୟନ୍' କାଗଜର ଅବସ୍ଥା ଶୋଚନୀୟ । ଏଣୁ ବାପୁଜୀ ନେଟାଲ ଯାତ୍ରା କଲେ । ଗଲା ବେଳେ ରସ୍କିନ୍ ସାହେବଙ୍କ ଲେଖା 'ଅନ୍‌ଟୁ ଦିସ୍ ଲାଷ୍ଟ' ନାମକ ବହି ଖଣ୍ଡିକ ପୋଲକ୍ ସାହେବ ତାହାଙ୍କୁ ଦେଇ ଥିଲେ । ତାହାକୁ ପଢି ବାପୁଜୀଙ୍କର ମନକୁ ବଡ଼ ଆନନ୍ଦ ଲାଗିଥିଲା । ତହିଁର ସାରକଥା :—

(୧) ସମସ୍ତଙ୍କ ମଙ୍ଗଳରେ ନିଜର ମଙ୍ଗଳ

(୨) ଓକିଲର କାମର ମୂଲ୍ୟ ଯେତିକି ବାରିକର କାମର ମୂଲ୍ୟ ସେତିକି । କାରଣ, ନିଜ ନିଜ ବୃତ୍ତିରେ ଜୀବିକା ନିର୍ବାହ କରିବା ପାଇଁ ସମସ୍ତଙ୍କର ସମାନ ଅଧିକାର ଅଛି ।

(୩) ଶ୍ରମିକ ଅର୍ଥାତ୍ ଚଷା ବା କାରିଗରର ଜୀବନ ଯାହାର ଅନୁକରଣରେ ଜୀବନ କଟାଇବା ସମସ୍ତଙ୍କର ଉଚିତ ।

ନେଟାଲରେ ପହଞ୍ଚି ରସ୍କିନଙ୍କ ଉପଦେଶ ଅନୁସରଣ କରି ମଫସଲ ଗ୍ରାମକୁ ଛପାଖାନା ଉଠାଇ ନେଇ ଗୋଟିଏ ଆଶ୍ରମ ଖୋଲିବା ପାଇଁ ବ୍ୟବସ୍ଥା କରା ଗଲା । ସେଠାରେ ଅଳ୍ପ ବେତନରେ କର୍ମଚାରୀ-ମାନେ ଚଳନ୍ତି । ଛପାଖାନାର ଖର୍ଚ୍ଚ ବେଶୀ ହେବ ନାହିଁ । ଜାଗା

କିଣା ହେଲା । ଛପାଖାନା ଉଠାଇ ନିଆଗଲା । ସେ ଅନୁଷ୍ଠାନର ନାମ ହେଲା 'ଫିନିକ୍ସ ଆଶ୍ରମ ।' ଏହି ଆଶ୍ରମରେ ପ୍ରଥମ ଦିନ କାଗଜ ଛପାଇବାରେ ବାପୁଜୀଙ୍କୁ ବଡ଼ କଠିନ ପରିଶ୍ରମ କରିବାକୁ ପଡ଼ିଥିଲା । ଆତ୍ମନିର୍ଭରଶୀଳତାରେ ଆନନ୍ଦ ଅନୁଭବ କରୁଥିବାରୁ ବାପୁଜୀଙ୍କୁ ଏ କଠିନ ପରିଶ୍ରମ ଅକିଞ୍ଚିତ୍କର ହୋଇ ଥିଲା । ପରିଶ୍ରମକୁ ଯେ ଡରି ଯାଏ ତାହାଠାରେ ମନୁଷ୍ୟତା ବିକାଶ ପାଏ ନାହିଁ ।

ବାପୁଜୀଙ୍କ ଫିନିକ୍ସ ଆଶ୍ରମଟି କ୍ରମଶଃ ଗୋଟିଏ କ୍ଷୁଦ୍ର ଗ୍ରାମରେ ପରିଣତ ହୋଇଥିଲା । ସେଠାରେ କଳା, ଗୋରା ପ୍ରଭୃତି ବିଭିନ୍ନ ଜାତିର ଲୋକ ନିଜ ନିଜ ପରିବାର ସହିତ ବାସ କରୁ ଥିଲେ । ସେମାନଙ୍କ ମଧ୍ୟରେ ପରସ୍ପର ଅକୃତ୍ରିମ ମୈତ୍ରୀ ଓ ସ୍ୱଚ୍ଛତା ଥିଲା । ଭାରତର ପଲ୍ଲୀ ଗ୍ରାମଗୁଡ଼ିକ ଆଜି ଯଦି ସେପରି ଆଦର୍ଶରେ ଗଢ଼ା ହୋଇ ପାରନ୍ତା ତେବେ ଭାରତ ଆଜି ସ୍ୱର୍ଗରେ ପରିଣତ ହୁଅନ୍ତା । ମୈତ୍ରୀ ଓ ସ୍ୱଚ୍ଛତାରେ ଯଥାର୍ଥ ସୁଖ ମିଳେ । ଟଙ୍କା ପଇସା ବା ବିଳାସ ମନୁଷ୍ୟକୁ ଯଥାର୍ଥ ସୁଖ ଦିଏ ନାହିଁ ।

କିଛିଦିନ ଉତ୍ତାରେ ନେଟାଲରେ ଜୁଲୁ-ବିଦ୍ରୋହ ଆରମ୍ଭ ହେଲା । ସଙ୍ଗେ ସଙ୍ଗେ ବାପୁଜୀ ଲାଟସାହେବଙ୍କୁ ଚିଠି ଲେଖି ଜଣାଇ ଦେଲେ ଯେ ଅନୁମତି ଦେଲେ ସେ (ବାପୁଜୀ) ସ୍ୱେଚ୍ଛାସେବକ ସେନା ବିଦ୍ରୋହ-ସ୍ଥଳରେ ସରକାରଙ୍କୁ ସାହାଯ୍ୟ କରିବେ । ଲାଟ ସାହେବଙ୍କ ଠାରୁ ସଙ୍ଗେ ସଙ୍ଗେ ଅନୁମତି ଆସିଗଲା । ଏଥି ପୂର୍ବରୁ ବାପୁଜୀଙ୍କ ପିଲାପିଲି ଜୋହାନ୍ସବର୍ଗ ଯାଇଥିଲେ । ବାପୁଜୀ ଘରର କିଛି ଉପକରଣ ସହିତ ସେମାନଙ୍କୁ ଫିନିକ୍ସ ଆଶ୍ରମକୁ ପଠାଇ ଦେଲେ । ଅବଶିଷ୍ଟ ଉପକରଣ ପୋଲକ ସାହେବଙ୍କ ଘରେ ରଖି ଦେଇ ଭଡ଼ା ନେଇଥିବା ଘରଟି ଛାଡ଼ି ଦେଲେ । ସ୍ୱେଚ୍ଛାସେବକ

ଉଠାଇ ଥିଲେ । ତହିଁରୁ ଚବିଶ ଜଣ ସେନା ବାପୁଜୀ ବିଦ୍ରୋହ ସ୍ଥଳକୁ ଯାତ୍ରା କଲେ । ସେଠାରେ ପହଞ୍ଚି ଦେଖିଲେ ଯେ, ଏହ ପ୍ରକୃତ ପକ୍ଷେ ବିଦ୍ରୋହ ନୁହେଁ । କେତେ ଜୁଲୁ-ସର୍ଦ୍ଦାର ନିଜ ସମ୍ପ୍ରଦାୟର ଲୋକଙ୍କୁ ନୂଆ ଖଜଣା ନ ଦେବା ପାଇଁ ଉପଦେଶ ଦେଇଥିଲେ । ଫଳରେ ଖଜଣା ଅସୁଲ କରିବାକୁ ଯାଇଥିବା ଜଣେ ସର୍ଜେଣ୍ଟଙ୍କୁ ଜୁଲୁ-ସମ୍ପ୍ରଦାୟର ଲୋକେ ବର୍ଚ୍ଛାରେ ମାରି ଦେଇ ଥିଲେ । ଏହି ଯାହା ତଥାକଥିତ ରଣ କ୍ଷେତ୍ରରେ ପହଞ୍ଚି ବାପୁଜୀ ଶୁଣିଲେ ଯେ ଆହତ ଜୁଲୁମାନଙ୍କ ସେବା ଶୁଶ୍ରୂଷା କରିବାକୁ ତାହାଙ୍କୁ ପଡ଼ିବ । ଶୁଣି ଖୁସି ହେଲେ । ସେଠାକାର ଡାକ୍ତର ବାପୁଜୀଙ୍କୁ ସ୍ୱାଗତ ଜଣାଇ ଥିଲେ । ଆହତ ଜୁଲୁମାନଙ୍କ ଘା ଗୁଡ଼ିକ ପଚି ଯାଉଥିଲା । ଗୋରା ସ୍ୱେଚ୍ଛାସେବକମାନେ ସେମାନଙ୍କ ସେବା ନିଜେ କରିବା ଦୂରେ ଥାଉ ବାପୁଜୀ ଯେପରି ସେବା ନ କରନ୍ତି ସେଥି ପାଇଁ ମନା କରୁଥିଲେ । ବାପୁଜୀଙ୍କର ଓ ତାଙ୍କ ସ୍ୱେଚ୍ଛାସେବକମାନଙ୍କର ଘା ଧୋଇ ପଟି ବାନ୍ଧିବାରେ ଅଭିଜ୍ଞତା ଥିଲା । ଡାକ୍ତରଙ୍କ ନିର୍ଦ୍ଦେଶ ଅନୁସାରେ ସମସ୍ତ କାର୍ଯ୍ୟ ସୁଚାରୁରୂପେ ନିର୍ବାହ କରି ନେଲେ । ଯେଉଁ ଗୋରାମାନେ ସେବା କରିବା ପାଇଁ ମନା କରୁଥିଲେ ସେମାନଙ୍କ ସହିତ ତାହାଙ୍କର ଘନିଷ୍ଠ ବନ୍ଧୁତା ଜମିଗଲା । ଏହା ଛଡ଼ା ସୈନିକ ବିଭାଗର କର୍ମଚାରୀମାନଙ୍କ ସଙ୍ଗେ ମଧ୍ୟ ପରିଚୟ ହୋଇଗଲା । ସେଥି ସଙ୍ଗେ ସଙ୍ଗେ ବହୁ ମୂଲ୍ୟ ତଥ୍ୟ ମଧ୍ୟ ସଂଗ୍ରହ କରିଥିଲେ । କେତେକ ଜୁଲୁଙ୍କୁ କେବଳ ତୁଚ୍ଛା ସନ୍ଦେହରେ ନିର୍ମମ ପ୍ରହାର କରି ସୈନିକମାନେ ଜଖମ କରି ଦେଇଥିଲେ । ସରକାରଙ୍କ ପକ୍ଷରେ ଲୋକ ବୋଲି ଚିହ୍ନାଯିବା ପାଇଁ ହୁଦା ଥିଲେ ମଧ୍ୟ ଏପରି କେତେକ ଜୁଲୁଙ୍କୁ ସୈନ୍ୟମାନେ ଗୁଳି ଚୋଟରେ ଆଘାତ କରି-ଥିଲେ । ଏହି ପୈଶାଚିକ କାଣ୍ଡର ପ୍ରମାଣ ପାଇ ବାପୁଜୀଙ୍କର ମନ

ସୁଖ ପ୍ରତି ଭକ୍ତ ହୋଇ ଯାଇଥିଲା । ଏଣୁ ସର୍ବଦା ସେ ଯୁଦ୍ଧ-ବନ୍ଦ ପାଇଁ ମତ ଦେଉଥିଲେ ।

ଜୁଲୁ-ବିଦ୍ରୋହ ବେଳେ ନିଜ ଆତ୍ମାର ପ୍ରକୃତ ବୁଝିବା ପାଇଁ ସେ ଯଥେଷ୍ଟ ସୁବିଧା ପାଇଥିଲେ । ସେଠାରେ ସେ ବୁଝିଥିଲେ ଯେ, ଆତ୍ମ-ସଂଯମ ପଶୁଠାରେ ନାହିଁ—କେବଳ ମନୁଷ୍ୟଠାରେ ଅଛି । ଆତ୍ମ-ସଂଯମ ଯୋଗୁଁ ମନୁଷ୍ୟ ପଶୁଠାରୁ ଶ୍ରେଷ୍ଠ । ବ୍ରହ୍ମଚର୍ଯ୍ୟ ଆତ୍ମ-ସଂଯମର ପ୍ରଧାନ ଅବଲମ୍ବନ । ଯଦି ସେ ବ୍ରହ୍ମଚର୍ଯ୍ୟ ବ୍ରତ ଗ୍ରହଣ କରି ନ ଥାଆନ୍ତେ ଏବଂ ନିଜ ସ୍ତ୍ରୀଙ୍କର କୌଣସି ସନ୍ତାନ-ପ୍ରସବର କାଳ ନିକଟ ବୋଲି ତାହାଙ୍କ ମନ ଉତ୍କଣ୍ଠିତ ହେଉ ଥାଆନ୍ତା ତେବେ ସେ ସେବା-କାର୍ଯ୍ୟ କରି ପାରି ନ ଥାଆନ୍ତେ । ଘର ସେବା ଛାଡ଼ି ପର ସେବା କରନ୍ତେ କିପରି ? ପର ସେବା ନ କଲେ ଆତ୍ମାର ପ୍ରକୃତ ବୁଝିବା ମଧ୍ୟ କଠିନ । ଏଣୁ ହିନ୍ଦୁ ଶାସ୍ତ୍ରରେ ବ୍ରହ୍ମଚର୍ଯ୍ୟକୁ ଉଚ୍ଚ ସ୍ଥାନ ଦିଆ ଯାଇଅଛି । ଏହିପରି ନାନା ଅଭିଜ୍ଞତା ଲାଭ ଓ ଆତ୍ମଦର୍ଶନ ଭିତରେ ଜୁଲୁ-ବିଦ୍ରୋହ ଶାନ୍ତ ହେଲା । ସେ ଫିନିକ୍ସ ଆଶ୍ରମକୁ ଫେରି ଗଲେ । ଲାଟ ସାହେବ ତାହାଙ୍କ ସେବାର ପ୍ରଶଂସା କରି ଧନ୍ୟବାଦ ଦେଇ ଚିଠି ପଠାଇଲେ । ଏ ସମୟରେ ଇଉରୋପରେ Passive resistance ବା ନିଷ୍କ୍ରିୟ ପ୍ରତିରୋଧ ସମ୍ବନ୍ଧରେ ଆଲୋଚନା ହେଉଥାଏ । କିନ୍ତୁ ସେଠାରେ ଏହାର ଅର୍ଥ ଯେପରି ଭାବରେ ଗ୍ରହଣ କରା ଯାଉଥାଏ, ପରିଣାମରେ ନିଷ୍କ୍ରିୟ ପ୍ରତିରୋଧ ହିଂସାଯୁକ୍ତ ବୋଲି ବୁଝା ଯାଉଥାଏ । ଏ ଅର୍ଥ ବାପୁଜୀଙ୍କ ମନକୁ ପାଇଲା ନାହିଁ । ଇଂରେଜୀ Passive resistance ର ନାମ ଭାରତୀୟ ଭାଷାରେ କିପରି ରୂପାନ୍ତର କରା ଯାଇପାରେ ତାହା ବାପୁଜୀ ଚିନ୍ତା କଲେ । ନିଜେ ସ୍ଥିର କରି ନ ପାରିବାରୁ ଯେ ଏହାକୁ ନିର୍ଣ୍ଣୟ କରି ପାରିବ ତାହାକୁ ପୁରସ୍କାର ଦିଆଯିବ ବୋଲି ସମ୍ବାଦ-

ସଭାରେ ଘୋଷଣା କଲେ । ମଦନଲାଲ ଗାନ୍ଧୀ 'ସଦାଗ୍ରହ' ( ସତ୍ + ଅଗ୍ରହ ) ବୋଲି ତର୍ଜମା କରି ପୁରସ୍କାର ପାଇଲେ । ସାଧୁ କାମ ପ୍ରତି ଅଗ୍ରହକୁ ସଦାଗ୍ରହ କହନ୍ତି । ବାପୁଜୀ ପୁରସ୍କାର ଦେଇ ସାରି ତର୍ଜମାକୁ ଅଳ୍ପକିଛି ସ୍ପଷ୍ଟତର କରି ସତ୍ୟାଗ୍ରହ ନାମ ଦେଲେ । ଏହି ନାମ ଅଦ୍ୟାବଧି ଚାଲୁଅଛି ଓ ଭବିଷ୍ୟତରେ ଚାଲୁଥିବ । କଥାରେ ଅଛି—"ପାଞ୍ଚ ଆତ୍ମା ପରମେଶ୍ୱର" । ପାଞ୍ଚ ଜଣଙ୍କର ସାଧୁ ବିଚାରକୁ ଈଶ୍ୱରଙ୍କ ବିଚାର କୁହାଯାଇ ପାରେ । 'ସଦାଗ୍ରହ' ଶବ୍ଦ ପାଇବାରୁ ତାହାକୁ 'ସତ୍ୟାଗ୍ରହ' କରାଯାଇ ପାରିଲା । ଏହାପରେ ବିଭିନ୍ନ ମହାତ୍ମାଙ୍କ ଯୁକ୍ତି-ପ୍ରୟୋଗରେ ପୃଥିବୀରେ ସଭ୍ୟତାର ବିକାଶ ଘଟୁଅଛି ।

ଫିନିକ୍ସ ଆଶ୍ରମରେ ଯେଉଁମାନେ ଥିଲେ ସେମାନେ କିଛି କିଛି ଭୂମି ନେଇ କୃଷି-କାର୍ଯ୍ୟ ମଧ୍ୟ କରୁଥିଲେ । ସେଠାରେ ବାପୁଜୀ ଗୋଟିଏ ବିଦ୍ୟାଳୟ ମଧ୍ୟ ଖୋଲିଥିଲେ । ଏଥିରେ ହିନ୍ଦୁ, ମୁସଲମାନ, ପାର୍ସି, ଖ୍ରୀଷ୍ଟିୟାନ ପ୍ରଭୃତି ସବୁ ସମ୍ପ୍ରଦାୟର ବାଳକ ବାଳିକାମାନେ ପଢୁଥିଲେ । କିନ୍ତୁ ସେଠାରେ ଶିକ୍ଷକ ଅଭାବ ଥିଲେ । ବାହାରୁ ଶିକ୍ଷକ ଆଣି ବେତନ ଦେବା ପାଇଁ ଅର୍ଥ-ବଳ ନ ଥିଲା । ତହିଁରେ ପୁଣି ମଫସଲ ଜାଗାରେ ରହି ଶିକ୍ଷକତା କରିବାକୁ କେହି ରାଜି ହେଉ ନ ଥିଲେ । ଏଣୁ ବାପୁଜୀଙ୍କୁ ଶିକ୍ଷକତା କରିବାକୁ ପଡୁଥିଲା । ସେ ଛାତ୍ରମାନଙ୍କ ଚରିତ୍ର ଗଢ଼ିବା ପାଇଁ ବିଶେଷ ନଜର ଦେଇ ଥିଲେ । ପିଲାମାନେ ନିଜର ଦୈନିକ କାର୍ଯ୍ୟକ୍ରମ ମଧ୍ୟରେ ଶିକ୍ଷାଲାଭ କରୁଥିଲେ । ପିଲାମାନେ ନିଜ ହାତରେ ରନ୍ଧା ଶିଖୁଥିଲେ । ନିଜେ ନିଜେ ପାଇଖାନା ସଫା ମଧ୍ୟ କରୁଥିଲେ । ବଗିଚା କାମ ମଧ୍ୟ କରୁଥିଲେ । ଏହିପରି ଅକ୍ଷର-ଶିକ୍ଷା, ଶରୀର-ଗଠନ, ଜୀବନ-ନିର୍ବାହର

ସ୍ୱାସ୍ଥ୍ୟ ପ୍ରଭୃତି ଏକ ସଙ୍ଗରେ ସବୁ ଚାଲିଥାଏ । କୃଷିରେ ଶାରୀରିକ ପରିଶ୍ରମ ଲୋଡ଼ା ହୁଏ । ଫୁଲ୍ ଫଳ ଉତ୍ପାଦନ କଲେ ମନରେ ଆନନ୍ଦ ଆସେ । ଏଣୁ ଏହା ଚରିତ୍ର-ଗଠନର ଅନୁକୂଳ । ଅଳ-ସଜୀବନ ବହି ସେଉଁ ବିଦ୍ୟାଭ୍ୟାସ ତହିଁରେ ଚରିତ୍ର-ଗଠନର ସୁବିଧା ଅଟେ ନାହିଁ । ଗଛ-ଲଗାଇ ଫୁଲ-ଫଳ ଉତ୍ପାଦନ କରିବାରେ ମନରେ ଯେଉଁ ଆନନ୍ଦ ଆସେ କ୍ରିକେଟ-ଫୁଟବଲ ପ୍ରଭୃତି ଖେଳରେ ମନରେ ସେପରି ଆନନ୍ଦ ଆସେ ନାହିଁ । ଜୀବନରେ ଅନୁଭବ କରି ଥିବାରୁ ବାପୁଜୀ କୃଷିକୁ ଅକ୍ଷର-ଶିକ୍ଷା ସଙ୍ଗେ ସଂଯୁକ୍ତ କରିବା ପାଇଁ ଉପଦେଶ ଦେଉଥିଲେ ।

ବାପୁଜୀଙ୍କ ହୃଦୟରେ ଅସୀମ ପ୍ରେମ ଥିଲା । ସେହି ପ୍ରେମରେ ପୃଥିବୀର ସମଗ୍ର ମାନବ ଜାତି କିପରି ଏକ ପରିବାରର ଅନ୍ତର୍ଗତ ବୋଲି ବୁଝିବେ, ତାହା ତାହାଙ୍କର ପ୍ରଧାନ ଲକ୍ଷ୍ୟ ଥିଲା । ଯେ ଇଚ୍ଛା ସେ ଶାସକ ହେଉ, ସେ ପୃଥିବୀରେ ପରସ୍ପର ସ୍ନେହ ପ୍ରତିଷ୍ଠା କରୁ— ଏହାହିଁ ତାହାଙ୍କର ମତ ଥିଲା । ଏକୁଟିଆ ରହିବା ମନୁଷ୍ୟର ସ୍ୱଭାବ ନୁହେଁ । ସେପରି କୌଣସି ଜାତି ଅନ୍ୟ ଜାତି ଠାରୁ ପୃଥକ୍ ରହି ନ ପାରେ । ଏହା ବୁଝି ଇଂରେଜମାନେ ଏ ଦେଶରୁ ଚାଲି ଯାଆନ୍ତୁ ବୋଲି ସେ କହୁ ନ ଥିଲେ । ଏଣୁ ଇଂରେଜ ଜାତିର ବିପଦ ପଡ଼ିଲେ ସେ ସାହାଯ୍ୟ କରିବାକୁ ପ୍ରସ୍ତୁତ ଥିଲେ । ତାଙ୍କର ଦୃଢ଼ ବିଶ୍ୱାସ ଥିଲା ଯେ ଇଂରେଜମାନେ କ୍ରମଶଃ ପ୍ରେମର ମର୍ଯ୍ୟାଦା ବୁଝିବେ ଓ ଶୋଷଣନୀତି ପରିହାର କରିବେ ।

ଆଫ୍ରିକାରେ ସତ୍ୟାଗ୍ରହ ସରିବା ଉତ୍ତାରେ ୧୯୧୪ ସାଲରେ ବିଲାତ ବାଟେ ଭାରତକୁ ଫେରିବା ପାଇଁ ଯାତ୍ରା କଲେ । ମହାସମର ଆରମ୍ଭର ସମ୍ଭାବନା ସେ ମେଡ଼ିରାଠାରେ ଶୁଣିଥିଲେ । ଅଗଷ୍ଟ ଚାରି

ତାରିଖରେ ଯୁଦ୍ଧ ଘୋଷଣା କରି ଯାଇଥିଲା । ସେତେବେଳେ ଦେଶ-ପ୍ରାଣ ଗୋଖଲେ ସ୍ୱାସ୍ଥ୍ୟର ଉନ୍ନତି ଯାଇଁ ପାରିସ୍ ଯାଇଥିଲେ । ଯୁଦ୍ଧ ଲାଗିବାରୁ ସେ ସେଠାରେ ଅଟକି ଯାଇଥିଲେ । ଯୁଦ୍ଧରେ କର୍ତ୍ତବ୍ୟ କଅଣ, ଏ ବିଷୟରେ ଅନେକ ଭାରତୀୟଙ୍କ ସହିତ ବାପୁଜୀ ବିଲାତରେ ଆଲୋଚନା କରିଥିଲେ । ଗୋଟିଏ ସଭା ଡକା ହୋଇଥିଲା । ସେଥିରେ ବାପୁଜୀ ନିଜର ମତ ପ୍ରକାଶ କରିଥିଲେ । ଅନେକ ଆପତ୍ତି ଉଠିଲା । ଅନେକେ କହିଲେ, "ଇଂରେଜମାନେ ପ୍ରଭୁ, ଆମେ ଦାସ ଏପରି ଅବସ୍ଥାରେ ଦାସ ପ୍ରଭୁ ସହିତ ସହଯୋଗିତା କରି ନ ପାରେ ।" କିନ୍ତୁ ବାପୁଜୀ ବୁଝିଥିଲେ ଯେ, ଦୋଷ ଶାସନ-ପଦ୍ଧତିର ନୁହେଁ; ଯେଉଁମାନେ ଶାସନ ଚଳାଇବାକୁ ଭାରତକୁ ଯାଉଛନ୍ତି ସେମାନଙ୍କ ବ୍ୟକ୍ତିଗତ ଦୋଷରୁ ଶାସନରେ ଦୋଷ ଘଟୁଅଛି ! ଏଣୁ ସେ ସ୍ୱେଚ୍ଛାସେବକ ଆହ୍ୱାନ କରିଥିଲେ । ଭାରତର ସବୁ ପ୍ରଦେଶର ଓ ସବୁ ସମ୍ପ୍ରଦାୟର କେତେ କେତେ ଲୋକ ସ୍ୱେଚ୍ଛାସେବକ ହେବା ପାଇଁ ରାଜି ହୋଇଥିଲେ ।

ଭାରତୀୟମାନଙ୍କୁ ସ୍ୱେଚ୍ଛାସେବକ ରୂପେ ଗ୍ରହଣ କରି ସେମାନଙ୍କୁ ଉପଯୁକ୍ତ ଶିକ୍ଷା ଦେବା ନିମନ୍ତେ ବାପୁଜୀ ଲର୍ଡ କ୍ରୁଙ୍କ ପାଖକୁ ଚିଠି ଲେଖିଥିଲେ । ଲର୍ଡ କ୍ରୁ ପ୍ରଥମେ ଟିକିଏ ସନ୍ଦେହ କରି ପରେ ରାଜି ହୋଇଥିଲେ ଓ ଧନ୍ୟବାଦ ଦେଇ ବାପୁଜୀଙ୍କ ପାଖକୁ ଉତ୍ତର ଦେଇଥିଲେ । ଆହତମାନଙ୍କୁ କିପରି ଶୁଶ୍ରୂଷା କରିବାକୁ ହେବ ତାହା ଡାକ୍ତର କ୍ୟାଣ୍ଟଲି ସ୍ୱେଚ୍ଛାସେବକମାନଙ୍କୁ ଶିଖାଇଲେ । ଛଅ ସପ୍ତାହରେ ପ୍ରାଥମିକ ଶିକ୍ଷା ସରି ଯାଇଥିଲା । ପରୀକ୍ଷା ହେଲା । ଜଣକ ଛଡ଼ା ସମସ୍ତେ ପାସ୍ କରିଗଲେ । ସେତେବେଳେ ବିଲାତର ଅବାଳ-ବୃଦ୍ଧ-ବନିତା ଦେଶକୁ ଆପଦ-ବିପଦରୁ ଉଦ୍ଧାର କରିବା ପାଇଁ ଲାଗି ଯାଇଥିଲେ ।



ଷିଣ ଅଫ୍ରିକାରେ ସ୍ୱେଚ୍ଛା ସେବକର ଅଧିନାୟକ—୧୯୦୬

ଯୁଦ୍ଧରେ ସାହାଯ୍ୟ କରୁଥିବା କଥା ଦକ୍ଷିଣ ଆଫ୍ରିକାରେ ରହିଗଲା । ଅହିଂସା-ନୀତି ସହିତ ଯୁଦ୍ଧରେ ସାହାଯ୍ୟ କରିବା ନୀତି କିପରି ଖାପ ଖାଉଛି ?—ଏକଥା ପାଠକ ପଚାରି ଚିଠି ଲେଖିଲେ । ଡକେଇତମାନଙ୍କ ସେବା କଲେ ତହିଁରେ ମଧ୍ୟ ପାପ ଅଛି । ହିଂସା-ନୀତି ଧରିଥିବା ସୈନିକମାନଙ୍କୁ ସେବା କରିବା ଉଚିତ ନୁହେଁ ବୋଲି ବାପୁଜୀ ଜାଣିଥିଲେ । କିନ୍ତୁ ତାଙ୍କର ବିଶ୍ୱାସ ଥିଲା ଯେ, ଦାସ୍ୟ-ଭକ୍ତିରେ ଶାସକ ପ୍ରଭୁଙ୍କର ମନୋଭାବ ବଦଳାଇ ଦେଇ ପାରିବେ । ଅନ୍ୟ ଉପାୟରେ ଯୁଦ୍ଧରୁ ନିବୃତ୍ତି କରାଇବା ପାଇଁ ଯାହାର ବଳ ନାହିଁ ସେ ଆଉ କଅଣ କରି ପାରେ ?

ସ୍ୱେଚ୍ଛାସେବକ ହୋଇ ସେବା କଲେ ମଧ୍ୟ ସେତେବେଳେ ସେ ଟିକିଏ ସତ୍ୟାଗ୍ରହ କରିବାକୁ ପାଶୋରି ନ ଥିଲେ । ଶିକ୍ଷକ ଶିକ୍ଷା ଦେବାବେଳେ ସ୍ୱେଚ୍ଛା-ସେବକମାନଙ୍କ ଉପରେ ହାକିମି କରିବା ପାଇଁ ପ୍ରବୃତ୍ତ ହୋଇଥିଲେ । ତାହାର ପ୍ରତିବାଦ କରି ବାପୁଜୀ ଅନଶନ ବ୍ରତ କରିଥିଲେ । ଚଉଦ ଦିନ ଉପବାସ ଉତ୍ତାରେ ଦେହରେ ବଳ ଅଛି କି ନାହିଁ ଏପରି ସନ୍ଦେହରେ ଡ୍ରିଲ୍ ଶ୍ରେଣୀରେ ତାହାଙ୍କୁ ଯୋଗ ଦେବାକୁ ଦଉଥିଲେ । ଦୁଇ ମାଇଲ ବାଟ ଚାଲି ଡ୍ରିଲ୍ ପଡ଼ିଆକୁ ଯାଉଥିବାରୁ ତାହାଙ୍କର ପାର୍ଶ୍ୱ--ବେଦନା [Plurisy] ହୋଇଥିଲା । କ୍ରମଶଃ ସେ ଆରୋଗ୍ୟ ଲାଭ କରି ଭାରତକୁ ଫେରିଲେ । ବୋମ୍ବେଇରେ ତାହାଙ୍କୁ ଉପଯୁକ୍ତ ରୂପେ ଅଭ୍ୟର୍ଥନା କରାଯାଇ ଥିଲା । ବଣରେ ମାଳତୀ ଫୁଟିଥିଲେ ମଧ୍ୟ ଦୂରକୁ ଗନ୍ଧ ଦେଉଥିଲା । ସୁଦୂର ଆଫ୍ରିକାରେ ରହି ବାପୁଜୀ ଯେଉଁ କାମ କରୁଥିଲେ ତାହା ଭାରତବର୍ଷରେ ଆଉ କାହାକୁ ଅଜଣା ନ ଥିଲା ।

ବାପୁଜୀ ବୋମ୍ବେଇରେ ପହଞ୍ଚିବା ପୂର୍ବରୁ ତାହାଙ୍କର ଫିନିକ୍ସ ଦଳଟି ଭାରତରେ ପହଞ୍ଚି ଥିଲେ । ଆଣ୍ଡ୍ରୁଜ୍ ସାହେବ ସେମାନଙ୍କୁ

ଶାନ୍ତିନିକେତନରେ ରଖାଇଥିଲେ । ବାପୁଜୀ ସେମାନଙ୍କୁ ଭେଟିବା ପାଇଁ ବ୍ୟଗ୍ର ହୋଇପଡ଼ିଲେ । ଶାନ୍ତିନିକେତନକୁ ଅସୁ ଅସୁ ବାଟରେ ପୁନାରେ ଗୁରୁଙ୍କର ଓଁଗୋଖେଲଙ୍କ ସଙ୍ଗେ ଦେଖା କରିବାକୁ ଯାଇଥିଲେ । କାରଣ, ତାହାଙ୍କୁ ଗୁରୁ ବୋଲି ଭକ୍ତି କରୁଥିଲେ । ଗୁରୁ ମଧ୍ୟ ବାପୁଜୀଙ୍କ ପ୍ରତି ଅଗାଧ ସ୍ନେହଆଶୀର୍ବାଦ ଦେଉଥିଲେ । ଗୁରୁଙ୍କଠାରେ ଗୋଟିଏ ଆଶ୍ରମ ଖୋଲିବେ ବୋଲି ବାପୁଜୀ ପ୍ରକାଶ କରିବାରୁ ଗୋଖଲେ ଆନନ୍ଦିତ ହୋଇ ବ୍ୟୟଭାର ବହନ କରିବେ ବୋଲି ପ୍ରତିଶ୍ରୁତ ଦେଇଥିଲେ । ସେଠାରୁ ବାପୁଜୀ ଶାନ୍ତିନିକେତନକୁ ଆସିଥିଲେ । ସେଠାରେ ମଧ୍ୟ ଉପଯୁକ୍ତରୂପେ ଅଭ୍ୟର୍ଥନା ପାଇଥିଲେ । ସେଠାରେ ସେ ଗୋଖଲେଙ୍କ ପରଲୋକ ସମ୍ବାଦ ପାଇ ପୁନା ଯାତ୍ରା କଲେ ।

ଦକ୍ଷିଣ ଆଫ୍ରିକାରେ ସତ୍ୟାଗ୍ରହ ଚଳାଇବା ଦିନୁ ବାପୁଜୀ ଜାହାଜରେ ଓ ରେଲ୍ ଗାଡ଼ିରେ ତୃତୀୟ ଶ୍ରେଣୀରେ ଯାତାୟାତ କରୁଥିଲେ । ଏଣୁ ତୃତୀୟ ଶ୍ରେଣୀର ଯାତ୍ରୀଙ୍କ ଅସୁବିଧା ନିଜେ ଅନୁଭବ କରୁଥିଲେ । କିନ୍ତୁ ଶାନ୍ତି-ନିକେତନରୁ ପୁନାକୁ ଫେରିବା ବେଳେ ବର୍ଦ୍ଧମାନଠାରେ ତୃତୀୟ ଶ୍ରେଣୀର ଟିକଟ କିଣିବା ପାଇଁ ଓ ଗାଡ଼ିରେ ଚଢ଼ିବାପାଇଁ ସେ ଯେଉଁ କଷ୍ଟ ଅଙ୍ଗରେ ନିଭେଇ ଥିଲେ ତାହା ସେ ଆଜୀବନ ପାଶୋରି ନ ଥିଲେ । ଆଶ୍ରମ-ବୈଠକରେ ବସି ଦେଶଭକ୍ତ ହୋଇଥିଲେ ସେ କଦାପି ଅନ୍ତ-ଦୃଷ୍ଟି ଲାଭ କରି ପାରି ନ ଥାଆନ୍ତେ । ଏଣୁ ଖାଲି ଘରେ ବସି ବହି ପଢ଼ିଲେ କୌଣସି ଜ୍ଞାନ ଜନ୍ମେ ନାହିଁ । ସଙ୍କୀର୍ଣ୍ଣତା ଛାଡି ପୃଥିବୀର ଯାବତୀୟ ସମ୍ପ୍ରଦାୟର ଲୋକଙ୍କ ସଙ୍ଗେ ମିଶି ସମଦର୍ଶୀ ହେଲେ ଯଥାର୍ଥ ଜ୍ଞାନ ଉପୁଜେ । ବାପୁଜୀ ଭକ୍ତ ପାଇବା ପାଇଁ କଲ୍ୟାଣ ଯାଚି ବୁଲି ନ ଥିଲେ । ପରର ଦୁଃଖ ବୁଝିବା ପାଇଁ ତାହାଙ୍କର ଅନ୍ତର କାନ୍ଦୁଥିଲା ଓ ଦୁଃଖ ଦୂର କରିବା ପାଇଁ ପ୍ରାଣରୁ ଉତ୍ତେଜନା ଉଠୁଥିଲା । ଏଥିପାଇଁ ସମସ୍ତଙ୍କ ଆତ୍ମା ତାହାଙ୍କଠାରେ ବାନ୍ଧି ହେବାପାଇଁ ସ୍ୱତଃ ବ୍ୟଗ୍ର ହୋଇ ଉଠୁଥିଲା । ଏହି ବ୍ୟଗ୍ରତାକୁ ଯଥାର୍ଥ ଭକ୍ତ କହନ୍ତି ।

## ମହାତ୍ମ ଜୀବନର ପଥେ

"ଈଶ୍ୱରଃ ସର୍ବଭୂତାନାଂ ହୃଦ୍‌ଦେଶେଽର୍ଜୁନ ! ତିଷ୍ଠତି ।
ଭ୍ରାମୟନ୍ ସର୍ବଭୂତାନି ଯନ୍ତ୍ରାରୂଢ଼ାନି ମାୟୟା ।"

ଈଶ୍ୱର ସକଳ ପ୍ରାଣିଙ୍କର ହୃଦୟରେ ବାସ କରନ୍ତି । କୁମ୍ଭାର ଚକରେ ବସାଇ ବାଣ୍ଡିକ ବୁଲାଇଲା ପରି ସବୁ ଜୀବଙ୍କୁ ପିଣ୍ଡ-ଯନ୍ତ୍ରରେ ବସାଇ ମାୟାରେ ବୁଲାଉ ଅଛନ୍ତି । ଯେ ଶରୀରର ସୁଖ ଲୋଡବ ସେ ମାୟାରେ ପଡି ଘାଣ୍ଟି ହେବ । ଯେ ଈଶ୍ୱରଙ୍କୁ ଲୋଡବ ସେ ଆନନ୍ଦ ଉପଭୋଗ କରିବ । ଏଣୁ ଇନ୍ଦ୍ରିୟର ପ୍ରେରଣାକୁ ନେଡ଼ ଅନ୍ତରର ପ୍ରେରଣା ଅନୁସାରେ କାର୍ଯ୍ୟ କଲେ ବ୍ୟକ୍ତିଗତ ଆତ୍ମା ମହତ୍ ଆତ୍ମା ସଙ୍ଗେ ଯୋଗସୂତ୍ରରେ ଏକ ହୁଏ । ପଶୁ-ଜୀବନରେ ଜୀବପ୍ରତି ଦୟା କରିବା ପାଇଁ ଅନ୍ତରରୁ ପ୍ରେରଣା ଆସେ ନାହିଁ ।—ମନୁଷ୍ୟ ଜୀବନରେ ଆସେ । ସେ ପ୍ରେରଣା ଅନୁସାରେ କାମ କରିବା ପାଇଁ ମନୁଷ୍ୟର ସାରଳ୍ୟ ଥିବା ଉଚିତ । ସାରଳ୍ୟ ଦେଖାଇ ଦୁଃଖୀର ଦୁଃଖ ଦୂର କରିବା ପାଇଁ ସତତ ତତ୍ପର ହୋଇଥିବାରୁ ବାପୁଜୀ ମହାତ୍ମାରେ ପରିଣତ ହୋଇଗଲେ ।

ମହାତ୍ମାଜୀ ସର୍ବଦା ଅନ୍ତରର ପ୍ରେରଣା ଅନୁସାରେ କାର୍ଯ୍ୟ କରୁଥିଲେ । ପ୍ରେରଣାନୁସାରେ ସଂକଳ୍ପ କରୁଥିବାରୁ ତାହାକୁ କାର୍ଯ୍ୟରେ ପରିଣତ ନ କରିବା ପର୍ଯ୍ୟନ୍ତ ସ୍ଥିର ନ ଥିଲେ । କିନ୍ତୁ ଗୋଟିଏ ସଂକଳ୍ପ ରକ୍ଷା କରିପାରି ନ ଥିବାରୁ ସେ ଆଜେ ଅନୁତପ୍ତ ହୋଇ ଅଛନ୍ତି । କ୍ଷୀର ଖାଇଲେ କାମାଶକ୍ତି ବଢ଼େ । ପୁଣି ଫୁକା ପ୍ରଥାରେ ଗଉଡ଼ମାନେ ଗାଈଠାରୁ ଶେଷ କ୍ଷୀର-ବିନ୍ଦୁ ଶୋଷୁଥିବାରୁ କ୍ଷୀର ପ୍ରତି ତାହାଙ୍କର ଘୃଣା ଆସିଥିଲା । ଏଣୁ କ୍ଷୀର ଖାଇବେ ନାହିଁ

ବୋଲି ସେ ସଂକଳ୍ପ କରିଥିଲେ । କିନ୍ତୁ ଭାରତକୁ ଫେରି ଅହମଦାବାଦଠାରେ ଆଶ୍ରମ ଖୋଲିବାର କେତେଦିନ ପରେ ସେ ଅର୍ଶ ରୋଗାକ୍ରାନ୍ତ ହେଲେ । ଏଥିରୁ ମୁକ୍ତ ହେବା ପାଇଁ ଚିକିତ୍ସକମାନେ କ୍ଷୀର-ପଥ୍ୟର ବ୍ୟବସ୍ଥା କଲେ । ନାନା ବିଚାରରେ ସଂକଳ୍ପର ମଧ୍ୟମ ପନ୍ଥା ସ୍ଥିର ହେଲା ଓ ଛେଳି-କ୍ଷୀର ଖାଇଲେ । ଏହାକୁ ମଧ୍ୟ ଆମେ ଆନ୍ତରିକ ଦୁର୍ବଳତା କହିପାରୁ । ପରର ଉପକାର କରିବାକୁ ହେଲେ ଶରୀରକୁ ବଞ୍ଚାଇବାକୁ ହେବ । ସେଥିପାଇଁ ଅନ୍ତରରୁ ପ୍ରେରଣା ଆସିଲା । ସେ ଛେଳି-କ୍ଷୀର ଖାଇଲେ । କିନ୍ତୁ ଛେଳି-କ୍ଷୀର ନ ଖାଇ ଆରୋଗ୍ୟ-ଲାଭ କରି ପାରି ଥାଆନ୍ତେ କି ନାହିଁ ତାହା ସେ ପରୀକ୍ଷା କରି ପାରିଲେ ନାହିଁ ବୋଲି ଅନୁତପ୍ତ ହୋଇ ଅଛନ୍ତି । ସଂକଳ୍ପର ଏପରି ନିଷ୍ଠା ବ୍ୟତିକ୍ରମ ପାଇଁ ସେ ଅନୁତପ୍ତ ହେଲେ । ଏଥିରୁ ତାହାଙ୍କ ମହାତ୍ମା-ଜୀବନର ଆଦର୍ଶ ଅନାୟାସରେ ଉପଲବ୍ଧି କରିପାରୁ ।

"ବିପଦି ଧୈର୍ଯ୍ୟ ମଥାଭ୍ୟୁଦୟେ କ୍ଷମା,
ସଦସି ବାକ୍‌ପଟୁତା ଯୁଧି ବିକ୍ରମଃ
ଯଶସି ଚାଭିରୁଚି ର୍ବ୍ୟସନଂ ଶ୍ରୁତୌ
ପ୍ରକୃତିସିଦ୍ଧମିଦଂ ହି ମହାତ୍ମନାଂ ।"

ବିପଦ ବେଳେ ଧୈର୍ଯ୍ୟ ଧରିବ । ସମ୍ପଦ କାଳରେ କ୍ଷମା ଆଚରିବ । ସଭାରେ ଶ୍ରୋତାମାନଙ୍କୁ ମୁଗ୍ଧ କରିବାଭଳି କହିବା ପାଇଁ କ୍ଷମତା ଥିବ । ଯୁଦ୍ଧରେ ବିକ୍ରମ ପ୍ରକାଶ କରିବ । ଯଶରେ ରୁଚି ଅର୍ଥାତ୍ ସାଧୁକର୍ମ କରିବା ପାଇଁ ସର୍ବଦା ଆଗ୍ରହ ଥିବ । ସର୍ବଦା ଶାସ୍ତ୍ର-ଚର୍ଚ୍ଚା କରୁଥିବ । ଏ ସମସ୍ତ ଗୁଣ ମହାତ୍ମାମାନଙ୍କର ଅଭ୍ୟାସଗତ । ଆଫ୍ରିକାରେ ନିଜେ କେତେଥର ମାଡ଼ ଖାଇଲେ

ମଧ୍ୟ ଅଚିରେ ସୂକ୍ଷ୍ମ ନିଜ ହାତ କାହା ଉପରକୁ ଟେକି ନାହାନ୍ତି । ଜର୍ମାନୀ ସହିତ ଇଂରେଜମାନଙ୍କର ଯୁଦ୍ଧ ଲାଗିଲାବେଳେ ଅନେକ ଭାରତୀୟ ଭାରତର ଅଭ୍ୟୁଦୟ ମଣି ଇଂରେଜଙ୍କ ବିଦ୍ରୋହୀ ହେଲେ । କିନ୍ତୁ ମହାତ୍ମାଜୀ ଇଂରେଜଙ୍କୁ ସାହାଯ୍ୟ କଲେ । ଏହାଠାରୁ ବଳି ଆଉ କି କ୍ଷମା ଅଛି ? ତାହାଙ୍କ ବକ୍ତୃତା ଯେ ଶୁଣିଛି ବା ସମ୍ବାଦ-ପତ୍ରରୁ ପଢ଼ିଛି ତାହାର ମଧୁରତା ସେ ବୁଝିଛି । ଅସ୍ତ୍ରଧାରୀର ସମ୍ମୁଖରୁ ବିନାସ୍ତ୍ରରେ ଲଢ଼ିବା ପାଇଁ ଆଗଭର ହେବା ବୀରତ୍ୱର ଚରମ ସୀମା । ସାଧୁ କର୍ମରେ ତ ଜୀବନ ଭରପୂର । ଶାସ୍ତ୍ର-ପାଠ ମଧ୍ୟ ତଦନୁରୂପ ।

"ନୈନଂ ଛିନ୍ଦନ୍ତି ଶସ୍ତ୍ରାଣି ନୈନଂ ଦହତି ପାବକଃ
ନ ଚୈନଂ କ୍ଳେଦୟନ୍ତ୍ୟାପୋ ନ ଶୋଷୟତି ମାରୁତଃ ।"

ଆତ୍ମା ଶସ୍ତ୍ରରେ ଛିଣ୍ଡେ ନାହିଁ । ଅଗ୍ନିରେ ପୋଡ଼େ ନାହିଁ । ଜଳରେ ବୁଡ଼େ ନାହିଁ, ପବନରେ ଶୁଖେ ନାହିଁ । ସଂସାରରେ କର୍ମ କରି ଅଭିଜ୍ଞତାରେ ଉକ୍ତ ବିଶ୍ୱାସ ଯେତିକି ଦୃଢ଼ତର ହୁଏ ମନୁଷ୍ୟ ଜନ-ସେବା ପ୍ରତି ସେତିକି ଆକୃଷ୍ଟ ହୁଏ । ଏଥିରେ ଶରୀରର ଲକ୍ଷଣ ଲୁଚି ଯାଇ କେବଳ ଆତ୍ମାର ଲକ୍ଷଣ ପ୍ରକାଶ ପାଏ । ଶୁଦ୍ଧ ଆତ୍ମାର ଲକ୍ଷଣ ଯେ ପ୍ରକାଶ କରିପାରେ ସେ ମହାତ୍ମା ।

ମହାତ୍ମାଜୀ ଭାରତକୁ ଫେରି ଆସି ୧୯୧୫ ସାଲ ମେ ମାସ ୨୫ ତାରିଖରେ ଅହମଦାବାଦଠାରେ ସତ୍ୟାଗ୍ରହ-ଆଶ୍ରମ ପ୍ରତିଷ୍ଠା କରିଥିଲେ । ଅହମଦାବାଦର କେତେକ ବନ୍ଧୁ ଆଶ୍ରମର ଖର୍ଚ୍ଚ ଚଳାଇବାକୁ ପ୍ରତିଶ୍ରୁତି ଦେଇଥିଲେ । ସେଠାରେ ମହାତ୍ମାଜୀ ଗୃହଶିଳ୍ପ ଓ ସୂତାକଟାର କେନ୍ଦ୍ର ଖୋଲିଥିଲେ । ଆଶ୍ରମବାସୀଙ୍କ ପାଇଁ ନିୟମାବଳୀ ଓ ବ୍ରତବିଧି ମଧ୍ୟ ସେ ନିରୂପଣ କରି ଦେଇଥିଲେ । ହିନ୍ଦୁମାନଙ୍କ ଅସ୍ପୃଶ୍ୟତା-ଆଚରଣ ତାହାଙ୍କର ଚିରକାଳ ଚକ୍ଷୁଶୂଳ

ଥିଲା । ଏଣୁ ଅସ୍ପୃଶ୍ୟ ଜାତିର ପରିବାରଟିଏ ଆଶ୍ରମରେ ରଖିବା ପାଇଁ ତାହାଙ୍କର ଏକାନ୍ତ ଆଗ୍ରହ ଥାଏ । ଏ ସମୟରେ ଅମୃତଲାଲ୍ ଠକର୍‌ଙ୍କର ବାପା ଗୋଟିଏ ପରିବାର ପଠାଇ ଦେଲେ । ଏ ପରିବାର ରହିବା ହେତୁରୁ ଆଶ୍ରମକୁ କେହି ସାହାଯ୍ୟ କଲେ ନାହିଁ । କିନ୍ତୁ ମହାତ୍ମାଜୀ ନିରାଶ ହେଲେ ନାହିଁ । ଆର୍ଥିକ ଅନାଟନରେ ମଧ୍ୟ ଲକ୍ଷ୍ୟ-ପଥ ଧରିଥିବାରୁ ଜଣେ ଶେଠ୍ ଆସି ଟ ୧୩୦୦୦ ଟଙ୍କାର ନୋଟ ଦେଇଗଲେ । ତର୍କ ବିତର୍କରେ ଆପଣାକୁ ନିୟୋଜିତ ନ କରି ନୀରବ ହୋଇ ସାଧୁକର୍ମ କରୁଥିବାରୁ ଅହମଦାବାଦରେ ଅସ୍ପୃଶ୍ୟତା କ୍ରମଶଃ ଶିଥିଳ ହୋଇ ପଡ଼ିଲା ।

ଆଶ୍ରମରେ ରହି କରି ମହାତ୍ମାଜୀ କ୍ରମଶଃ ଭାରତର ରାଜନୈତିକ ସମସ୍ୟାରେ ଯୋଗ ଦେଉଥିଲେ । ଭାରତରୁ ଦକ୍ଷିଣ ଆଫ୍ରିକାକୁ ଯେଉଁ କୁଲି ପାଞ୍ଚବର୍ଷ ବା ତହିଁରୁ ଅଳ୍ପ ସମୟ ପାଇଁ ଚୁକ୍ତି ଲେଖି-ଦେଇ ଯାଉଥିଲେ ତାହାଙ୍କୁ ଇଣ୍ଡେଞ୍ଚର୍ଡ଼ କୁଲି କୁହାଯାଉଥିଲା । ଏମାନେ ନେଟାଲକୁ ଗଲେ ସେଠାରେ ଏମାନଙ୍କ ଉପରେ ଟ ୩୦ ଟଙ୍କା ଲେଖାଏଁ ଟିକସ୍ ବସା ହୋଇଥିଲା । ୧୯୧୪ ସାଲରେ 'ଗାନ୍ଧି-ସ୍ମଟ୍' ଚୁକ୍ତିନାମାରେ ଏ ଟିକସ୍ ଅସୁଲ ବନ୍ଦ ହୋଇଥିଲା । ମାତ୍ର ଭାରତରୁ କୁଲି ଯାଉଥିଲେ ।

ଭାରତରୁ କୁଲି ଯିବା ପ୍ରଥାକୁ ବନ୍ଦ କରିବା ପାଇଁ ୧୯୧୬ ସାଲରେ ବଡ଼ଲାଟଙ୍କ ସଭାରେ ମାଲବ୍ୟଜୀ ଗୋଟିଏ ପ୍ରସ୍ତାବ ଆଗତ କରିଥିଲେ । କିନ୍ତୁ ବଡ଼ଲାଟ ଲର୍ଡ଼ ହାର୍ଡ଼ିଞ୍ଜ କହିଲେ ଯେ କୁଲି ନେବାପାଇଁ ସରକାରରୁ ଅନୁମତି ଦିଆ ଯାଉଅଛି । ଯଥା ସମୟରେ ଏ ପ୍ରଥା ଉଠାଇ ଦିଆଯିବ । କିନ୍ତୁ ମହାତ୍ମାଜୀ ଏପରି ଅନିଶ୍ଚିତ ବିଶ୍ୱାସରେ ସନ୍ତୁଷ୍ଟ ହେଲେ ନାହିଁ । ଆନ୍ଦୋଳନ ଚଳାଇବା ପାଇଁ

ପ୍ରସ୍ତୁତ ହେବାକୁ ବସିଲେ । ଏ ସମୟରେ ବଡ଼ଲାଟ ଜବାବ ଦେଲେ—"ଅବଶେଷରେ କାଣ୍ଡଜ୍ଞାନ ଉଠିଯିବ ।"

୧୯୧୭ ସାଲରେ ପ୍ରଥା ଉଠାଇ ଦେବା ପାଇଁ ମାଲବ୍ୟଜୀ ବଡଲାଟଙ୍କ ସଭାରେ ଗୋଟିଏ ଆଇନର ଖସଡା ଉପସ୍ଥାପିତ କରିଥିଲେ । କିନ୍ତୁ ଲର୍ଡ଼ ଚେମସ୍‌ଫୋର୍ଡ଼ ତାହା ସଭାରେ ବିଚାର ହୋଇ-ହେବା ପାଇଁ ଅନୁମତି ଦେଇ ନ ଥିଲେ । ମହାତ୍ମାଜୀଙ୍କୁ ସୁଯୋଗ ମିଳିଗଲା । ଦେଶସାରା ଆନ୍ଦୋଳନ କରିବା ପାଇଁ ଉପଯୁକ୍ତ ମୁହୂର୍ତ୍ତି କାହିଁକି ? ନିଜେ କାହାର ଦୋଷ ଦେଖି ତାହା ତାର ଆଗରେ କହିଲେ ତହିଁରେ ନିଜ ଅହଙ୍କାରର ପରିଚୟ ମିଳେ । କିନ୍ତୁ ଅନ୍ୟ ଜଣେ ଯଦି ଜଣକର ଅନ୍ୟାୟ ଆଚରଣ ନିନ୍ଦା କରୁଥିବାବେଳେ ତାହାକୁ ସମର୍ଥନ କଲେ ତହିଁରେ ଅହଙ୍କାରର ସତ୍ତା ପ୍ରକାଶ ପାଏ ନାହିଁ ।

ମହାତ୍ମାଜୀ ଗୃହଅଡ଼େ ବୁଲି ସଭା ସମିତି କରି ଜନମତ ଲାଟସାହେବଙ୍କଠାକୁ ପଠାଇଲେ । ଗୋଟିଏ ମହିଳା-ଡେପୁଟେସନ ମଧ୍ୟ ବଡ଼ଲାଟଙ୍କ ପାଖକୁ ଯାଇଥିଲା । ବଡଲାଟ ସେମାନଙ୍କୁ ଉତ୍ସାହ-ଜନକ ଜବାବ ଦେଇଥିଲେ । ଏଣେ ମହାତ୍ମାଜୀଙ୍କ ପଛରେ ଗୁପ୍ତ-ପୁଲିଶ ଲାଗି ଥାଆନ୍ତି । କିନ୍ତୁ ମହାତ୍ମାଜୀଙ୍କର କୌଣସି କଥା ଲୁଚାଚୋରି ନ ଥାଏ । କିଏ କଅଣ କରିବ ? ମାତ୍ର ରେଲଗାଡ଼ିରେ ବୁଲିବାବେଳେ ପ୍ରତି ଷ୍ଟେସନରେ ପୁଲିଶମାନେ ମହାତ୍ମାଜୀଙ୍କୁ ଟିକଟ ମାଗିବାରୁ ଡବାରେ ବସିଥିବା ଅନ୍ୟ ଯାତ୍ରୀମାନେ ପୁଲିଶଙ୍କ ଉପରେ ବିରକ୍ତ ହେଉଥିଲେ । ଯାହାହେଉ ତୃତୀୟ ଶ୍ରେଣୀର ଡବାରେ ଛୁଡ଼ା ହୋଇ ଅନେକ ସମୟରେ ଭ୍ରମଣ କରିଛନ୍ତି । ଅନ୍ୟ ଯାତ୍ରୀମାନେ ଲମ୍ବ ହୋଇ ଶୋଇଥିଲେ ମଧ୍ୟ ସେମାନଙ୍କୁ ଉଠାଇ ନିଜେ ବସିବା ପାଇଁ

ସ୍ଥାନ ଦେଖାଗାଡ଼ି କରୁ ନ ଥିଲେ । ଏହାପରେ ବଙ୍ଗରେ ଆନ୍ଦୋଳନ କରିବା ଫଳରେ କୁଲି ନେବା ପ୍ରଥା ଉଠିଗଲା ବୋଲି ବଡ଼ଲାଟ ଘୋଷଣା କରିଥିଲେ ।

ଦକ୍ଷିଣ ଆଫ୍ରିକାରେ ମହାତ୍ମାଜୀ ଦରିଦ୍ର-ନାରାୟଣଙ୍କର ଯେଉଁ ସେବା କରିଥିଲେ । ତାହା ଭାରତର କେତେକ ନେତୃସ୍ଥାନୀୟ ଲୋକେ ଜାଣିଥିଲେ । ଆଫ୍ରିକାରୁ ଫେରିଥିବା ପଶ୍ଚିମ ଭାରତର କୁଲିମାନେ ମଧ୍ୟ ପଲ୍ଲୀଗ୍ରାମରେ ତାହାଙ୍କ ଗୁଣ ଗାନ କରୁଥିଲେ । କିନ୍ତୁ ଭାରତର ପଲ୍ଲୀବାସୀମାନେ ତାହାଙ୍କର କୌଣସି କାର୍ଯ୍ୟକଳାପ ଦେଖି ନ ଥିଲେ । କୌଣସି ଆନ୍ଦୋଳନରେ ପଲ୍ଲୀବାସୀଙ୍କ ଉପରେ ହେଉଥିବା ଅତ୍ୟାଚାର ଦୂର ହୋଇପାରେ ବୋଲି କାହାର ଧାରଣା ନ ଥିଲା । ଓକିଲଙ୍କୁ ଟଙ୍କା ଦେଇ ମାମଲା ଲଢ଼ିବା ଛଡ଼ା ପଲ୍ଲୀ-ବାସିମାନେ ଅନ୍ୟ ପ୍ରତିକାରର ଉପାୟ ଥିବା କଥା ଆଦୌ ଜାଣି ନ ଥିଲେ । ବିହାରର ଚମ୍ପାରଣରେ ୧୯୧୭ ସାଲ ଯାଏ ନୀଳକୋଠି ପ୍ରଚୁର ଥିଲା ଓ ସାହେବମାନେ କୋଠିଗୁଡ଼ିକର ମାଲିକ ଥିଲେ । ସେମାନେ ତିନିକାଠିଆ ପ୍ରଥା ଚଳାଉଥିଲେ । ମାଣକ କୋଡ଼ିଏ କାଠା । ଯେଉଁ ପ୍ରଜାର କୋଡ଼ିଏ କାଠା ଜମି ଥାଏ ତହିଁରୁ ତିନି କାଠାରେ ସେ ନୀଳ ଚାଷ କରିବାକୁ ବାଧ୍ୟ ହେଉଥିଲା । ଏହାପରି କୋଡ଼ିଏ ଭାଗ ଜମିରୁ ତିନିଭାଗ ଜମିରେ ନୀଳ ଚାଷ ହେଉଥିବାରୁ ଏହି ପ୍ରଥାକୁ ତିନିକାଠିଆ କହୁଥିଲେ । ଏହି ପ୍ରଥା ଯୋଗୁଁ ପ୍ରଜାମାନେ ବହୁତ କଷ୍ଟ ଭୋଗ କରୁଥିଲେ ।

ଚମ୍ପାରଣର ପ୍ରଜାଙ୍କ ଦୁଃଖ ଶୁଣିବାରୁ ମହାତ୍ମାଜୀ ସେମାନଙ୍କ ଦୁଃଖ ବୁଝିବା ପାଇଁ ସେଠାକୁ ଗଲେ । ସେତେବେଳେ ସେଠାର ଲୋକେ କଂଗ୍ରେସର ନାମ ଶୁଣି ନ ଥାଆନ୍ତି । ଲାଲ ପଗଡ଼ି ଦେଖିଲେ

ଭସୂରେ ଅରହର ହେଉ ଥାଅନ୍ତି । କିନ୍ତୁ ନୀଳ ଓଡ଼ାଠିର ସାହେବମାନେ ମହାତ୍ମାଜୀଙ୍କ କ୍ଷମତା ଜାଣିଥିଲେ । ସେ ସେଠାରେ ଆନ୍ଦୋଳନ ଆରମ୍ଭ କଲେ ସେମାନଙ୍କ ଲାଭରେ ବାଧା ପଡ଼ିବାର ଆଶଙ୍କା ଜନ୍ମି ଯାଇଥିଲା । ଚମ୍ପାରଣରୁ ବାହାରି ଯିବା ପାଇଁ କମିଶନର ସାହେବ ମହାତ୍ମାଜୀଙ୍କ ପାଖକୁ ନୋଟିସ ପଠାଇଲେ । ମହାତ୍ମାଜୀ ଲେଖି ଦେଲେ, "ମୁଁ ଅନୁସନ୍ଧାନ କରିବାପାଇଁ ଚମ୍ପାରଣକୁ ଆସିଅଛି । ଅନୁସନ୍ଧାନ ନ ସରିଲେ ମୁଁ ସ୍ଥାନ ଛାଡ଼ିଯାଇ ପାରିବି ନାହିଁ । ଏଣୁ ହୁକୁମ୍ ମାନିବି ନାହିଁ ।" ହୁକୁମ୍ ନ ମାନି ଅନୁସନ୍ଧାନରେ ଲାଗିବାରୁ ଗିରଫ ହେଲେ । ସେ କାହିଁକି ହୁକୁମ୍ ମାନିଲେ ନାହିଁ ? ସେ ସରକାରଙ୍କ ବିରୁଦ୍ଧରେ ପ୍ରଜାଙ୍କୁ ମତାଇ ଗୋଲମାଳ ସୃଷ୍ଟି କରୁ ନ ଥିଲେ ବା ସୃଷ୍ଟି କରିବା ତାଙ୍କର ଉଦ୍ଦେଶ୍ୟ ନ ଥିଲା । ପିତା ପୁତ୍ରକୁ ଭାତ ଖାଇବାକୁ ଅଯଥା ମନା କଲେ ପୁତ୍ର ସେପରି ମନା ଶୁଣେ ନାହିଁ । କମିଶନର ଜ୍ଞ ବୁଦ୍ଧି ନ ବିଚାରି ଆଦେଶ ଦେଲେ ତାହାକୁ ଶିରୋଧାର୍ଯ୍ୟ କରିବା ପାଇଁ ମହାତ୍ମାଙ୍କ ଅନ୍ତର ମନା କଲା । ଅନ୍ତରର ପ୍ରେରଣା ଅନୁସାରେ ସେ କାର୍ଯ୍ୟ କରୁ ଥିବାରୁ ହୁକୁମ୍ ମାନିବାକୁ ରାଜି ହେଲେ ନାହିଁ । ଗିରଫ ହେବାରୁ ବହୁତ ମଙ୍ଗଳ ହେଲା । ସେ ଅଞ୍ଚଳର ଲୋକଙ୍କ ମଧ୍ୟରେ ଜାଗରଣ ଦେଖାଗଲା । ଏଥର ହଜାର ହଜାର ଲୋକ ଜମା ହେଲେ । ମହାତ୍ମାଜୀଙ୍କୁ କଚେରିକୁ ନିଆଗଲା । କିନ୍ତୁ ଅପରାଧୀର ବିଚାର ହେଲା ନାହିଁ । ଅପରାଧ ତ ନ ଥିଲା, କି ବିଚାର କରନ୍ତେ ? ବିଚାର ବନ୍ଦ ରହିବାରୁ ମହାତ୍ମାଜୀ ଗୋଟିଏ ଲିଖିତ ଜବାବ ଦାଖଲ କଲେ :—

"ମୁଁ ଏଭଳି କୌଣସି କାର୍ଯ୍ୟ କରିନାହିଁ, ଯାହା ପାଇଁ ଫୌଜଦାରୀ କାର୍ଯ୍ୟ ବିଧି ଆଇନର ୧୪୪ ଧାରା ମୋ' ଉପରେ

ପ୍ରୟୋଗ କରା ଯାଇପାରେ । ବୃଥାରେ ଏ ସ୍ଥାନର ସରକାର ଓ ମୋ ମଧ୍ୟରେ ମତଭେଦର ଗୋଟିଏ ପ୍ରଶ୍ନ ଉଠିଅଛି । ମୁଁ ଦେଶର ଓ ଜନସାଧାରଣଙ୍କ ସେବା କରିବା ପାଇଁ ଏଠାକୁ ଆସିଅଛି । ଏଠାର ଲୋକମାନେ ଡାକିବାରୁ ଏଠାକୁ ଆସିଲି । ଲୋକେ କହନ୍ତି ଯେ, ଏଠାର ନୀଲ କୋଠିର ମାଲିକମାନେ ତାହାଙ୍କ ପ୍ରତି ଭଲ ବ୍ୟବହାର କରନ୍ତି ନାହାନ୍ତି । ଲୋକଙ୍କ ଠାରୁ, ନୀଲକୋଠିର ମାଲିକମାନଙ୍କଠାରୁ ଓ ସରକାରଙ୍କଠାରୁ କଥାଟା ଭଲରୂପେ ବୁଝିବା ପାଇଁ ମୁଁ ଏଠାକୁ ଆସିଅଛି । ମୁଁ ଆସିବାରୁ କୌଣସି ପ୍ରକାରର ଶାନ୍ତିଭଙ୍ଗ ଘଟି ନାହିଁ ବା ଘଟିବାର ଆଶଙ୍କା ନାହିଁ । ଆଇନ ମାନିବା ସମସ୍ତଙ୍କର କର୍ତ୍ତବ୍ୟ । ମୁଁ ମଧ୍ୟ ମାନିବାକୁ ଇଚ୍ଛା କରୁଥିଲି । କିନ୍ତୁ ବୁଝି ପାରିଲି ଯେ, ଅଗତ୍ୟା ହୁକୁମ୍ ମାନିଲେ ମୁଁ ଯେଉଁ କାମ କରିବାକୁ ଆସିଛି ତାହା କରି ପାରିବି ନାହିଁ । ଏଣୁ ଇଚ୍ଛା କଲେ ମଧ୍ୟ ଫେରି ଯାଇ ପାରିଲି ନାହିଁ । ଭାରତର ଶାସନ-ପଦ୍ଧତି ଯେପରି ଜଟିଳ ହୋଇଅଛି ତହିଁରେ ଜାହା ପାଇଁ ଆତ୍ମସମ୍ମାନ ସୂଚକ ନିରାପଦ ପନ୍ଥା ମୋତେ ଦିଶୁ ନାହିଁ । ଏଣୁ ଆଇନ-ଅମାନ୍ୟ ପାଇଁ ଯେଉଁ ଶାସ୍ତି ଦିଆଯିବ ତାହାକୁ ବିନା ପ୍ରତିବାଦରେ ଗ୍ରହଣ କରିବାକୁ ରାଜି ଅଛି ।

ଦଣ୍ଡର ଲାଘବ ହେବ ବୋଲି ମୁଁ ଏ କୈଫିୟତ ଲେଖୁ ନାହିଁ । କର୍ତ୍ତୃପକ୍ଷଙ୍କ ପ୍ରତି ସମ୍ମାନ ଅଭାବରୁ ହୁକୁମ ଅମାନ୍ୟ କଲି ବୋଲି ଯେଉଁ ଧାରଣା ଜନ୍ମି ଅଛି ତାହା ଦୂର କରିବା ପାଇଁ ଏ କୈଫିୟତ୍ ଲେଖିଲି । ଅନ୍ତରରେ ନିର୍ଦ୍ଦେଶ ମହତ୍ତର ବିଧି । ସେ ବିଧି ଅନୁସାରେ ମୁଁ ହୁକୁମ୍ ଅମାନ୍ୟ କରିଛି ।"

ଏ କୈଫିୟତ୍ ପାଇବା ଉତ୍ତାରେ ମକଦ୍ଦମା ଉଠାଇ ନିଆଗଲା । ଗ୍ଲୋଟଲେଟଙ୍କ ସଙ୍ଗେ ମହାତ୍ମାଜୀଙ୍କର ଦେଖା ହେଲା । ଅନୁସନ୍ଧାନର

କାର୍ଯ୍ୟ ଚାଲିଲା । ସଙ୍ଗେ ସଙ୍ଗେ ଶିକ୍ଷାର ପ୍ରଚାର ପାଇଁ ମହାତ୍ମାଜୀ ସେଠାରେ ବିଦ୍ୟାଳୟ ଖୋଲିଲେ ଓ ଚିକିତ୍ସା ପାଇଁ ଔଷଧ-ବିତରଣର ବ୍ୟବସ୍ଥା କଲେ । ଏଥିରେ ଜନସାଧାରଣଙ୍କ ଦୃଷ୍ଟିକୁ ତାହାଙ୍କର ମହାନୁଭବତା ସ୍ପଷ୍ଟତର ରୂପେ ପ୍ରତିଭାତ ହେଲା । ନୀଳ କୋଠିର ମାଲିକଙ୍କ ଦୁର୍ବ୍ୟବହାର ମଧ୍ୟ ବନ୍ଦ ହେଲା ।

"ସେବା ବିନୟ ଦାନ ଫଳେ । କିବା ଅସାଧ୍ୟ ମହୀତଳେ"

ଚମ୍ପାରଣରେ ସେବା-କାର୍ଯ୍ୟ କରୁଥିବାବେଳେ ଅହମଦାବାଦର କଳର ମାଲିକ ଓ ଶ୍ରମଜୀବୀମାନଙ୍କ ମଧ୍ୟରେ ମଜୁରି ସମ୍ବନ୍ଧରେ ବିବାଦ ଚାଲିଲା । ମହାତ୍ମାଜୀଙ୍କୁ ସେଠାକୁ ଯିବାକୁ ପଡ଼ିଲା । କଳର ମାଲିକମାନଙ୍କୁ ଯେତେପ୍ରକାର ଅନୁନୟ ବିନୟ କଲେ ମଧ୍ୟ ସାଲିସିରେ ବିବାଦ ତୁଟାଇବା ପାଇଁ ସେମାନେ ରାଜି ହେଲେ ନାହିଁ । ଧର୍ମଘଟ କରିବା ପାଇଁ ମହାତ୍ମାଜୀ କୁଲିମାନଙ୍କୁ ଅଗତ୍ୟା ଉପଦେଶ ଦେଇଥିଲେ । ସେମାନଙ୍କୁ ସେ ବୁଝାଇ ଦେଇଥିଲେ :—(୧) କଦାପି ହିଂସା ବିହିବା ଉଚିତ ନୁହେଁ, (୨) ଯେଉଁ କୁଲିମାନେ ଧର୍ମଘଟ କରିବାକୁ ନାରାଜ ସେମାନଙ୍କୁ କୌଣସି ପ୍ରକାରେ ହଇରାଣ କରିବାକୁ ହେବ ନାହିଁ, (୩) ଧର୍ମଘଟ ଚାଲୁଥିବା ସମୟରେ ଧର୍ମଘଟକାରୀମାନେ ପେଟ ପୋଷିବା ପାଇଁ ଭିକ ମାଗିବେ ନାହିଁ । ଏବଂ (୪) ଯେତେ ଦିନ ଧର୍ମଘଟ ଚାଲିବ ଆପଣାର ଝାଣ ସର୍ବଦା ରଖିବାକୁ ହେବ ଓ ଅନ୍ୟ ସାଧୁ ଉପାୟରେ ରୋଜଗାର କରି ପେଟ ପୋଷିବାକୁ ହେବ ।

ଦୁଇ ସପ୍ତାହ ଧର୍ମଘଟ ଚାଲିବା ଉତ୍ତାରେ କୁଲିମାନଙ୍କର ଦମ୍ଭ ଭାଙ୍ଗି ଯାଉଥିବାର ସୂଚନା ମିଳିଲା । ଦିନେ ସକାଳେ ମହାତ୍ମାଜୀ ଗୋଟିଏ ସଭାରେ ସେମାନଙ୍କୁ କହିଲେ, "ନିଷ୍ପତ୍ତି ପାଇବା ପର୍ଯ୍ୟନ୍ତ ତୁମେମାନେ ମେଳ ଧରି ଧର୍ମଘଟ ନ ଚଳାଇଲେ ମୁଁ ଆହାର ଛୁଇଁବି

ନାହିଁ ।" ଏଥର କୁଲିମାନଙ୍କ ମନରେ ନୂତନ ବଳ ଆଶା ଆସିଗଲା । ସେତେବେଳେ ଆଶ୍ରମର ଘର ତିଆରି ପାଇଁ ବାଲି ବୁହା ହେବାର ପ୍ରୟୋଜନ ଥିଲା । ଅନସୂୟା ବେନ୍, ଟୋକେଇରେ ବାଲି ମୁଣ୍ଡରେ ନିଜେ ବୋହିବାରୁ ତାଙ୍କର ଶ୍ରମଜୀବୀମାନେ ଆନନ୍ଦରେ ବାଲି ବୁହାଇ ପେଟ ପୋଷିବା ପାଇଁ ପଇସା ପାଇଲେ । ମହାତ୍ମାଜୀଙ୍କ ଆତ୍ମା ଅନ୍ୟର ଲୌହ-ଅଙ୍ଗ ପ୍ରତି ସ୍ପର୍ଶମଣିର କାର୍ଯ୍ୟ କରିପାରୁଥିଲା, ତାହା ଏ ଘଟଣାରୁ ପ୍ରମାଣ । ଏ ଘଟଣାର ଏକ ସପ୍ତାହ ଭିତରେ ବିବାଦ ମେଣ୍ଟି ଯାଇଥିଲା ।

ନିଷ୍ଠାର ମାରିବାକୁ ମହାତ୍ମାଜୀଙ୍କୁ କେତେବେଳେ ହେଲେ ଡର ନ ଥାଏ । ଅହମଦାବାଦର କୁଲି ଆନ୍ଦୋଳନ ସଫଳ ହେବାକୁ ଖେଡ଼ାର ସତ୍ୟାଗ୍ରହ ଆରମ୍ଭ ହେବାର ଉପକ୍ରମ ହେଉଥାଏ । ଖେଡ଼ା ଜିଲ୍ଲାର ଫସଲ ନଷ୍ଟ ହୋଇ ଦୁର୍ଭିକ୍ଷର ଆଶଙ୍କା ଦେଖା ଯାଉଥାଏ । ସେ ବର୍ଷର ଖଜଣା ଅସୁଲ ନ କରି ବନ୍ଦ ରହେ ସେଥିପାଇଁ ସେଠାର ପାଟିଦାରମାନେ ସେଠାରେ ଗୁହାରି କରୁଥିଲେ । ମହାତ୍ମାଜୀ କୃଷୀ-ମାନଙ୍କ ଦୁର୍ଦ୍ଦଶା ସେତେପ୍ରକାର ବୁଝାଇ ସରକାରଙ୍କୁ ଲେଖିଲେ ମଧ୍ୟ ସରକାର କିଛି ବୁଝିଲେ ନାହିଁ । ଏଣୁ ସେଠାର ରଇତମାନଙ୍କୁ ନେଇ ମହାତ୍ମାଜୀ ସତ୍ୟାଗ୍ରହ ଆରମ୍ଭ କଲେ । ସେଠାରେ ସେ ଲୋକଙ୍କୁ ବୁଝାଇ ଦେଇଥିଲେ ଯେ, ହାକିମ କରଦାତାଙ୍କ ପଇସାରୁ ବେତନ ପାଉଥିବାରୁ ସେ ଲୋକଙ୍କ ପ୍ରଭୁ ନୋହି ଚାକର ଅଟନ୍ତି । ସୁତରାଂ ସେମାନଙ୍କୁ ଡରିବାର କାରଣ ନାହିଁ । କିନ୍ତୁ ଡର ଛାଡ଼ିବା ସଙ୍ଗେ ସଙ୍ଗେ ହାକିମମାନଙ୍କ ପ୍ରତି ବିନୀତ ବ୍ୟବହାର କରିବା ଉଚିତ ।

ସତ୍ୟାଗ୍ରହ ଚାଲିଲା । ଗୋରୁ-ଗାଈ ନିଲାମ ହେଲେ । କିନ୍ତୁ କେହି ଜେଲ-ଦଣ୍ଡ ନ ପାଇବାରୁ ଲୋକଙ୍କ ଭିତରେ କୌଣସି ଚାଞ୍ଚଲ୍ୟ ଦେଖା ଗଲା ନାହିଁ । ଏଣୁ ଗୋଟିଏ ଜମିରେ ହୋଇଥିବା

ପିଅଜ-କ୍ଷେତ ଯେତେବେଳେ ସରକାର କୋରଖରେ ଜବତ କଲେ ସେ କ୍ଷେତରୁ ଉଠାଇ ଆଣିବାକୁ ମହାତ୍ମାଜୀ ମୋହନଲାଲ ପାଣ୍ଡେ ଓ ଅନ୍ୟ କେତେକଙ୍କୁ କହିଲେ । ଫସଲ କୋରଖ କରିବା ଆଇନସଙ୍ଗତ ହେଲେ ମଧ୍ୟ ନୈତିକ ଦୃଷ୍ଟିରେ ଏହା ଅନ୍ୟାୟଜନକ । ଏହା ବିଚାର କରି ମହାତ୍ମାଜୀ ଏପରି କାର୍ଯ୍ୟ କରିବାକୁ ଉପଦେଶ ଦେଇ-ଥିଲେ । ଫଳରେ ପିଅଜ ଆଣିବା ଲୋକଙ୍କ ପ୍ରତି ଜେଲଦଣ୍ଡ ହେଲା । ସାଧାରଣ ଲୋକଙ୍କ ମନରୁ ଜେଲଦଣ୍ଡର ଭୟ ଗୁଞ୍ଜିଗଲା । ସୁନା ଆପେ ଅଗ୍ନି କୁଣ୍ଡକୁ ଡେଇଁ ନିଜ ଜ୍ୟୋତିର ପରିଚୟ ଦେଲା । ଏହା ଉତ୍ତାରେ ଧନୀ ପ୍ରଜାମାନେ ଖଜଣା ଆଦାୟ ଦେବେ ଓ ଗରିବ ପ୍ରଜାଙ୍କଠାରୁ ଖଜଣା ଅସୁଲ ବନ୍ଦ ରହିବ, ଏହି ସର୍ତ୍ତରେ ଆନ୍ଦୋଳନ ବନ୍ଦ ହେଲା ।

ଜଗତରେ ସବୁ ଜିନିଷରେ ଦ୍ୱନ୍ଦ୍ୱ ଶକ୍ତି ଅଛି । ଗୋଟିଏ ଶକ୍ତି ବିଭିନ୍ନ ବସ୍ତୁରେ ଭେଦ-ଭାବ ସୃଷ୍ଟି କରି ସୃଷ୍ଟିର ବିଚିତ୍ରତା ଦେଖାଏ । ଅନ୍ୟ ଶକ୍ତି ସୃଷ୍ଟିର ବିଚିତ୍ରତା ମଧ୍ୟରେ ଏକତ୍ୱ ଦେଖାଏ । ବିଭିନ୍ନ ରଙ୍ଗ ବ୍ୟବହାର କରି ଚିତ୍ରକର ଜଣେ ମନୁଷ୍ୟର ଚିତ୍ର ଅଙ୍କିଥାଏ । ତହିଁରୁ ଗୋଟିଏ ରଙ୍ଗ ପ୍ରତି ଆମର ମନ ଆକୃଷ୍ଟ ହୁଏ ନାହିଁ । ସବୁ ରଙ୍ଗ ମିଶି ଜଣେ ମନୁଷ୍ୟର ଚିତ୍ର ହୋଇଥିବାରୁ ତାହା ଆମକୁ ପ୍ରୀତିକର ଲାଗେ । ଏଣୁ ବିଶ୍ୱର ବିଚିତ୍ରତା ମଧ୍ୟରେ ଯେ ଐକ୍ୟ ଉପଲବ୍ଧି କରି ବିଶ୍ୱର ବିଚିତ୍ରତା ଜଣଙ୍କର ରୂପ ବୋଲି ବୁଝାଇ ଦିଏ ସେ ଜଗତରେ ମହାମାନବ । ପାର୍ଥକ୍ୟ ସମସ୍ତେ ବୁଝନ୍ତି । ଏକତ୍ୱ ହୃଦୟଙ୍ଗମ କରିବା ବଡ଼ କଠିନ । ମହାତ୍ମାଜୀ କଳା ଗୋରା ମଧ୍ୟରେ ପାର୍ଥକ୍ୟ-ବୁଦ୍ଧି ନ ରଖିବା ପାଇଁ ସରକାରଙ୍କ ସଙ୍ଗେ ଲଢ଼ୁଥିଲେ । ଏଥିପାଇଁ ଦକ୍ଷିଣ ଆଫ୍ରିକାରେ ହିନ୍ଦୁ ମୁସଲମାନ ମଧ୍ୟରେ ଏକତାର

ପ୍ରୟୋଜନ ହୋଇଥିଲା ଏବଂ ସେଠାରେ ଅନାୟାସରେ ଐକ୍ୟ ଘଟାଇ ପାରିଥିଲେ । କିନ୍ତୁ ଭାରତରେ ଅସି ଦେଖିଲେ ଯେ ହିନ୍ଦୁ-ମାନଙ୍କର କଂଗ୍ରେସ ଓ ମୁସଲମାନମାନଙ୍କର ଲିଗ୍ ଅନୁଷ୍ଠାନ ଗଢ଼ା ହୋଇ ଅଛନ୍ତି । ଏଣୁ ହିନ୍ଦୁ-ମୁସଲମାନଙ୍କ ମଧ୍ୟରେ ଐକ୍ୟ ଆଣିବା ପାଇଁ ସେ ବାରମ୍ବାର ଯତ୍ନ କରୁଥିଲେ । ସେତେବେଳେ ଅଲି ଭାଇ ( ମହମ୍ମଦ ଅଲି ଓ ସୌକତ ଅଲି ) ଜେଲଖାନାରେ ଥିଲେ । ସେମାନଙ୍କ ମୁକ୍ତି ପାଇଁ ସେ ଚିଠି ଲେଖି ସରକାରଙ୍କ ସଙ୍ଗେ କଥାବାର୍ତ୍ତା ଚଳାଇଥିଲେ ।

ଇଉରୋପରେ ପ୍ରଥମ ସମର ଲାଗିଥିବାବେଳେ ବଡ଼ଲାଟ ଚେମସଫୋର୍ଡ଼ ଭାରତର ନେତାମାନଙ୍କୁ ଡାକି ସୈନ୍ୟ-ସଂଗ୍ରହ ଲାଗି ଗୋଟିଏ ସମ୍ମିଳନୀର ଆୟୋଜନ କଲେ । ଏଥିରେ ଯୋଗ ଦେବା ପାଇଁ ମହାତ୍ମାଜୀ ବହୁ ଚିନ୍ତା କରି ରାଜି ହୋଇଥିଲେ । ସମ୍ମିଳନୀକୁ ଲୋକମାନ୍ୟ ତିଲକ, ଅଲିଭାଇ ଓ ଆନି-ବେସାନ୍ତଙ୍କୁ ଡକା ହୋଇ ନ ଥିଲା । ପୁଣି ସେତେବେଳେ ଇଂଲଣ୍ଡ ଇଟାଲି ସଙ୍ଗେ ଗୁପ୍ତ ସନ୍ଧି କରିଥିବା ସମ୍ବାଦ-ପତ୍ରରେ ପ୍ରକାଶିତ ହୋଇଥିଲା । ଏଥିପାଇଁ ସମ୍ମିଳନୀରେ ଯୋଗ ଦେଇ ସରକାରଙ୍କୁ ସାହାଯ୍ୟ କରିବା ପାଇଁ ମହାତ୍ମାଜୀ ଦ୍ୱିଧା ବୋଧ କରୁଥିଲେ । ପରିଶେଷରେ ସୈନ୍ୟ ସଂଗ୍ରହରେ ଲାଗିଲେ । ସେତେବେଳେ ଅନେକ ଲୋକ ତାହାଙ୍କୁ ପ୍ରଶ୍ନ କରିଥିଲେ ଯେ, ଅହିଂସା-ନୀତି ଧରି ସେ ଯୁଦ୍ଧ କରିବା ପାଇଁ କିପରି ଲୋକଙ୍କୁ ପ୍ରବର୍ତ୍ତାଇ ଅଛନ୍ତି । ସରକାର ଏ ଦେଶର ଏପରି କିଛି ମଙ୍ଗଳ କରି ନାହିଁ ଯାହାଦ୍ୱାରା ଲୋକେ ସରକାରଙ୍କୁ ବିପଦ-ବେଳେ ରକ୍ଷା କରିବା ପାଇଁ ଆଗଭର ହୋଇ ବାହାରି ପଡ଼ିବେ । ଉତ୍ତରରେ ମହାତ୍ମାଜୀ କହିଥିଲେ ଯେ ବ୍ରିଟିଶ ଜାତି ଭାରତବାସୀଙ୍କ

ଠାରୁ ଅସ୍ତ୍ରଶସ୍ତ୍ର ଛଡ଼ାଇନେବା ବଡ଼ କଦର୍ଯ୍ୟ ନୀତି । ବର୍ତ୍ତମାନ ସୁଯୋଗରେ ଅସ୍ତ୍ରଶସ୍ତ୍ର ବ୍ୟବହାର କରିବାକୁ ଲୋଡ଼ୁଁ କି ତାହା ତ୍ୟାଗ କରିବାକୁ ଇଚ୍ଛା କରୁଁ, ଏ କଥା ବୁଝାଇବା ପାଇଁ ହେବ ; ଏହିପରି ଅସୁବିଧାରେ ପଡ଼ି କିଛି କିଛି ସୈନ୍ୟ ସଂଗ୍ରହ କଲେ । କିନ୍ତୁ ଖେଡ଼ାରେ ତାଙ୍କର ତୀବ୍ର ଅନୁଭୂତି ଜନ୍ମିଲା । ସତ୍ୟାଗ୍ରହ ଆନ୍ଦୋଳନ-ବେଳେ ଯେଉଁ ଲୋକେ ଅସୀମ ସାହାଯ୍ୟ କରିଥିଲେ ସେମାନଙ୍କ ଠାରେ ମହାତ୍ମାଜୀଙ୍କ ପ୍ରତି ସହାନୁଭୂତିର ଚିହ୍ନ ଆଦୌ ଦେଖିବାକୁ ଏବେ ମିଳିଲା ନାହିଁ । ତତ୍ପରେ ବଡଲାଟଙ୍କ ପାଖକୁ ସେ ଚିଠି ଦେଲେ । ଚିଠିର ମର୍ମ ଏହା :—

"ଆପଣ ଜାଣନ୍ତି, ମୁଁ ବହୁ ବିଚାର କରି ସମ୍ମିଳନୀରେ ଯୋଗ ଦେଇଥିଲି । ଆପଣଙ୍କ ପ୍ରତି ମୋର ଶ୍ରଦ୍ଧା ଥିବାରୁ ସମ୍ମିଳନୀରେ ମୁଁ ଯୋଗ ଦେଇ ପାରିଥିଲି । ଲୋକମାନ୍ୟ ତିଲକ, ଆଲିଭାଇ ଓ ଆନି-ବେସାନ୍ତଙ୍କୁ ଆମନ୍ତ୍ରଣ କରାଯାଇ ନ ଥିବାରୁ ସମ୍ମିଳନୀରେ ଯୋଗ ଦେବା ପାଇଁ ମୋର ମନ ବଳୁ ନ ଥିଲା । ସେମାନଙ୍କ ଭଳି ନେତାମାନଙ୍କୁ ଆମନ୍ତ୍ରଣ ନ କରିବା ସରକାରଙ୍କର ଭୁଲ । ସେମାନଙ୍କୁ ଡାକିଲେ ସେମାନେ ଆସି ଯଦି ନିଜ ନିଜ ଉପଦେଶ ଦିଅନ୍ତି ତେବେ ସରକାରଙ୍କ ଭୁଲ ସଂଶୋଧିତ ହୋଇ ପାରେ । ମୁଁ ଏହା ସଙ୍ଗେ କେତୋଟି ସ୍ୱତନ୍ତ୍ର ପ୍ରସ୍ତାବ ପଠାଉ ଅଛି । ସରକାର ଯେତେ ଶୀଘ୍ର ଏହାକୁ ଗ୍ରହଣ କରିବେ ସେତେ ଶୀଘ୍ର ମୁଁ ମୋର କର୍ତ୍ତବ୍ୟକୁ କାର୍ଯ୍ୟରେ ପରିଣତ କରି ପାରିବି ବୋଲି ଆଶା କରୁଅଛି । ବ୍ରିଟିଶ ସାମ୍ରାଜ୍ୟର ଅନ୍ୟାନ୍ୟ ଉପନିବେଶ ଭଳି ନିକଟରେ ସ୍ୱାୟତ୍ତଶାସନ ପାଇବୁ ବୋଲି ଆମେ ଆଶା ପୋଷିଅଛୁ ଏବଂ ଅଳ୍ପ ସମୟ ମଧ୍ୟରେ ପାଇବୁ ବୋଲି ଆଶା କରିବାରୁ ଆମର ଉତ୍ସାହ ସରକାରଙ୍କ

ସାହାଯ୍ୟ କରିବା ପାଇଁ ବାଢ଼ିଅଛି । କଂଗ୍ରେସ ଓ ଲିଗ୍ ମିଳି ଶାସନର ଯେଉଁ ଖସଡ଼ା କରି ଅଛନ୍ତି ତାହାକୁ ଗ୍ରହଣ କରି ଅଳ୍ପଦିନ ମଧ୍ୟରେ ଶାସନ-ସଂସ୍କାର ହେବ ବୋଲି ଆପଣ ସୂଚନା ଦେଇ ଅଛନ୍ତି । ଏଥିରୁ ସମ୍ମିଳନୀର ଅନେକ ସଭ୍ୟ ସରକାରଙ୍କୁ ସାହାଯ୍ୟ କରିବାକୁ ପ୍ରସ୍ତୁତ ହେଲେ ।

"ମୋର କ୍ଷମତା ଥିଲେ ଏ ବିପଦ ବେଳେ ସ୍ୱାୟତ୍ତଶାସନ ଦାବୀ ନ କରିବା ପାଇଁ ମୁଁ ମୋର ଦେଶ ଭାଇମାନଙ୍କୁ କହନ୍ତି । ଏବଂ ସୁସ୍ଥ ସବଳ ପୁଅକୁ ସାମ୍ରାଜ୍ୟ ରକ୍ଷା ଲାଗି ବଳି ଦେବାପାଇଁ ଭାରତମାତାଙ୍କୁ ପ୍ରବର୍ତ୍ତାନ୍ତି । ଏତକ କରି ପାରି ସାମ୍ରାଜ୍ୟରେ ଭାରତ ଅଧିକ ଆଦରର ପାତ୍ର ହୁଅନ୍ତା ଓ ଆଜି ଜାତିଗତ ଭେଦ ରହନ୍ତା ନାହିଁ । କିନ୍ତୁ ଭାରତର ଶିକ୍ଷିତ ସମାଜ ଆଜି ଗୋଟିଏ ପନ୍ଥା ଧରି ବସି-ଅଛି । ଭାରତର ଜନସାଧାରଣଙ୍କ ଉପରେ ଶିକ୍ଷିତ ସମାଜର ପ୍ରଭାବ ନାହିଁ ବୋଲି ଏବେ କୁହାଯାଇ ନ ପାରେ । ମୁଁ ଦକ୍ଷିଣ ଆଫ୍ରିକାରୁ ଫେରି ଭାରତର ରଇତମାନଙ୍କ ସଙ୍ଗରେ ଭଲରୂପେ ମିଶିଅଛି ଏବଂ ଦୃଢ଼ ଭାବରେ ଜଣାଇ ଦେଉଅଛି ଯେ ସ୍ୱାୟତ୍ତଶାସନ ପାଇବା ପାଇଁ ସେମାନଙ୍କର ପ୍ରବଳ ଇଚ୍ଛା ଜନ୍ମିଅଛି । କଂଗ୍ରେସର ଗତ ବୈଠକରେ ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ଭାରତକୁ ପୂର୍ଣ୍ଣ ସ୍ୱାୟତ୍ତଶାସନ ଦେବାର ପ୍ରସ୍ତାବକୁ ମୁଁ ସମର୍ଥନ କରିଥିଲି ।

"ସ୍ୱାୟତ୍ତଶାସନ ଶୀଘ୍ର ମିଳିବାର ସୁସ୍ପଷ୍ଟ ଦୃଶ୍ୟ ଆଖି ଆଗରେ ନ ଦେଖିଲେ ଭାରତର ଲୋକେ ସନ୍ତୁଷ୍ଟ ହେବେ ନାହିଁ । ଏପରି ଅନେକ ଲୋକ ଭାରତରେ ଅଛନ୍ତି ଯେଉଁମାନେ ଏ ଉଦ୍ଦେଶ୍ୟ ସାଧନ ନିମନ୍ତେ ସମସ୍ତ ବଳି ଦେବା ପାଇଁ ପ୍ରସ୍ତୁତ ଅଛନ୍ତି । ଯେଉଁ ସାମ୍ରାଜ୍ୟରେ ସେମାନେ ଚରମ ଉନ୍ନତି ଲାଭ କରିବା ପାଇଁ ଆଶା ଓ

ବାସନା ପୋଷି ଅଛନ୍ତି ସେହି ସାମ୍ରାଜ୍ୟ ପାଇଁ ସମାନ ଭାବରେ ତ୍ୟାଗ ସ୍ୱୀକାର କରିବା ଆବଶ୍ୟକ ବୋଲି ସେମାନେ ଉପଲବ୍ଧି କରିବାକୁ ମଧ୍ୟ ସଚେତ ଅଛନ୍ତି । ଅତଏବ ସେଥିରୁ ଜଣାଯାଏ ଯେ ସାମ୍ରାଜ୍ୟକୁ ଅସନ୍ନ-ବିପଦରୁ ରକ୍ଷା କରିବା ପାଇଁ ମନପ୍ରାଣ ଢାଳି ନିଷ୍ଠାପର ହୋଇ ଲାଗିଗଲେ ଚରମ ଲକ୍ଷ୍ୟ ସାଧିତ ହେବ । ଏ ମୂଳ ସତ୍ୟ ନ ବୁଝିଲେ ଆମ ଜାତିର ଆତ୍ମହତ୍ୟା ଘଟିବ । ଆମର ବୁଝିବା ଉଚିତ ଯେ, ସାମ୍ରାଜ୍ୟକୁ ରକ୍ଷା କଲେ ଆମେ ସ୍ୱାୟତ୍ତଶାସନ ପାଇ ପାରିବୁ ।

"ଆଉ ଗୋଟିଏ କଥା ମୁଁ ନ ଲେଖି ରହି ପାରୁ ନାହିଁ । ଘର କଳା ଚଳାଇବାକୁ ଆପଣ ଆମକୁ ଅନୁରୋଧ କରି ଅଛନ୍ତି । ଘର କଳା ଅଛି ବୋଲି ସରକାରୀ କର୍ମଚାରୀ ଯେତେ ଅନ୍ୟାୟ ଓ ଅତ୍ୟାଚାର କରୁଥିବେ ତାହା ସହିବାକୁ କହିଲେ ମୁଁ ରାଜି ହେବାକୁ ଅକ୍ଷମ । ଚମ୍ପାରଣର ଯୁଗବ୍ୟାପୀ ଅନ୍ୟାୟ ବିରୁଦ୍ଧରେ ପ୍ରତିରୋଧ କରି ପ୍ରମାଣ କରି ଦେଇଛି ଯେ ବ୍ରିଟିଶ୍ ଜାତି ନ୍ୟାୟର ପକ୍ଷପାତୀ । ଖେଡ଼ା ଲୋକେ ସରକାରଙ୍କୁ ଗାଳି ଦେଉଥିଲେ । ଏବେ ସେମାନେ ଅନୁଭବ କଲେଣି ଯେ ସତ୍ୟ ପାଇଁ କଷ୍ଟ ସହିବାକୁ ପ୍ରସ୍ତୁତ ହେଲେ ପ୍ରକୃତ କ୍ଷମତା ଲୋକଙ୍କର—ସରକାରଙ୍କର ନୁହେଁ । ସରକାରଙ୍କ ପ୍ରତି ସେମାନଙ୍କର ଯେଉଁ କଟୁଭାବ ଥିଲା ତାହା ଚାଲି ଯାଇଅଛି । ସେମାନେ ବୁଝିଲେଣି ଯେ ଯେଉଁଠାରେ ଅନ୍ୟାୟ ଅଛି ସେଠାରେ ଶାନ୍ତିପୂର୍ଣ୍ଣ ସମ୍ମାନସୂଚକ ଆଇନ-ଅମାନ୍ୟକୁ ସରକାର ସହି ଯାଉ ଅଛନ୍ତି ; ଏଣୁ ଲୋକଙ୍କ ମଙ୍ଗଳ ପାଇଁ ଏ ସରକାର । ଅତଏବ ଚମ୍ପାରଣ ଓ ଖେଡ଼ାର ଘଟନା ଯୁଦ୍ଧକୁ ମୋର ଗୋଟିଏ ଦାନ କୁହାଯାଇ ପାରେ । ସେଭଳି କାମ ବନ୍ଦ କରିବାକୁ କହିଲେ

ତାର ପଥ ମୋର ଜୀବନକୁ ବନ୍ଦ କରିବା । ପଶୁବଳ ବଦଳରେ ଆତ୍ମବଳ ବା ପ୍ରେମବଳ ମୁଁ ଯଦି ଚଳାଇ ପାରେ ତେବେ ଏପରି ଗୋଟିଏ ଭାରତବର୍ଷ ଉପହାର ଦେଇପାରେ ଯେ ସମସ୍ତ ଅନ୍ୟାୟ ଅତ୍ୟାଚାରର ପ୍ରତିରୋଧ କରି ପାରିବ । ସଦାବେଳେ ମୋ ଜୀବନରେ ତ୍ୟାଗ ଧର୍ମକୁ ପ୍ରକାଶ କରିବା ପାଇଁ ମୁଁ ନିଜକୁ ନିୟନ୍ତ୍ରିତ କରିବି ।

"ଅବଶେଷରେ ମୁସଲମାନ ରାଜ୍ୟ ସମ୍ପର୍କରେ ସମ୍ରାଟଙ୍କ ମନ୍ତ୍ରୀମଣ୍ଡଳୀଙ୍କୁ ଜଣାଇବା ପାଇଁ ମୁଁ ଆପଣଙ୍କୁ ଅନୁରୋଧ କରୁଅଛି । ଆପଣ ଜାଣନ୍ତି ପ୍ରତ୍ୟେକ ମୁସଲମାନ ଏ ବିଷୟରେ କିପରି ଚିନ୍ତା କରି ଅଛନ୍ତି । ମୁଁ ହିନ୍ଦୁ ହେଲେ ମଧ୍ୟ ସେମାନଙ୍କ ଲକ୍ଷ୍ୟ-ସାଧନରେ ଅନାସ୍ଥା ପ୍ରକାଶ କରି ନ ପାରେ । ସେମାନଙ୍କ ଦୁଃଖ ଆମର ଦୁଃଖ ହେବ । ସେ ସବୁ ରାଜ୍ୟର ଦାବୀ ଓ ପୂଜା ସ୍ଥାନ ସମ୍ପର୍କରେ ମୁସଲମାନ ମନୋଭାବ ପ୍ରତି ଆପଣଙ୍କର ଚିନ୍ତାଶୀଳ ବିଚାର ଉପରେ ତଥା ସ୍ୱାୟତ୍ତଶାସନ ପାଇଁ ଭାରତର ଦାବୀ ପ୍ରତି ନ୍ୟାୟପୂର୍ଣ୍ଣ ବ୍ୟବହାର ଉପରେ ସାମ୍ରାଜ୍ୟର ମଙ୍ଗଳ ନିର୍ଭର କରେ । ମୁଁ ଇଂରାଜ ଜାତିକୁ ଭଲ ପାଏ ଏବଂ ପ୍ରତ୍ୟେକ ଭାରତୀୟ ପ୍ରାଣରେ ଇଂରେଜଙ୍କ ପ୍ରତି ଶ୍ରଦ୍ଧା କିପରି ଜାଗରିତ ହେବ ସେଥିପାଇଁ ଏ ଚିଠିଖଣ୍ଡ ଲେଖିଲି ।"

ମନୁଷ୍ୟର ସ୍ୱଭାବ ତାହାର କଥାରୁ ଜଣା ପଡ଼େ । ଏଥିପାଇଁ ସାହିତ୍ୟକୁ ଜାତିର ପ୍ରତିବିମ୍ବ କହନ୍ତି । କାରଣ, ସାହିତ୍ୟରେ ଜାତିର ଅନେକ ଲୋକ ନିଜ ନିଜ ଦୃଷ୍ଟି ଅନୁସାରେ ଜାତିର ସ୍ୱଭାବ ଚିତ୍ରଣ କରି ଥାଆନ୍ତି । କୌଣସି ମନୁଷ୍ୟର ଯଦି ଲେଖାବଳୀ ଥାଏ ତେବେ ସେହି ଲେଖାବଳୀ ଲେଖକକୁ ମାପିବା ପାଇଁ ଯଥାର୍ଥ ମାପକାଠି । ମହାତ୍ମାଜୀଙ୍କର ଅନେକ ଲେଖା ଅଛି । ପ୍ରତ୍ୟେକ ଲେଖାରେ ତାହାଙ୍କ ମହାନୁଭବତା ପ୍ରକାଶ ପାଏ । ଉପରେ ଯେଉଁ ଚିଠିର ମର୍ମ

ଏଅ ଗଙ୍କ ଚରିତ୍ରରେ ସତ୍ୟ ଯେପରି ପୂରି ରହିଅଛି ; ସରଳତା, ବିଶ୍ୱ-ପ୍ରୀତି ପ୍ରଭୃତି ଅନେକ ସାଧୁଗୁଣ ମଧ୍ୟ ସେପରି ଅଭିବ୍ୟକ୍ତ ହୋଇ-ଅଛି । ସଙ୍ଗେ ସଙ୍ଗେ ସରକାରଙ୍କୁ ଯଥାର୍ଥ ଉପଦେଶ ଦେଇ ଅଛନ୍ତି । ଭାଷାରେ ଚାତୁରୀର ତୀବ୍ରତା ଆଦୌ ନାହିଁ ।

ଊନବିଂଶ ଶତାବ୍ଦୀର ଶେଷ ଦଶକରେ କାଇଜର ଉଇଲିୟମ୍ ଜର୍ମାନୀର ସିଂହାସନ ଆରୋହଣ କରି ସାମ୍ରାଜ୍ୟ ବିସ୍ତାର ପାଇଁ ଆୟୋଜନ କରୁଥିଲେ । ତାହା ପୂର୍ବରୁ ବିସ୍‌ମାର୍କ ମନ୍ତ୍ରୀ ଥିବାବେଳେ ଖଣ୍ଡ ଖଣ୍ଡ ଜର୍ମାନୀ ଦେଶକୁ ଏକତ୍ରିତ କରି ତାହାକୁ କ୍ଷମତାଶାଳୀ କରିଥିଲେ । ଜର୍ମାନୀ, ଅଷ୍ଟ୍ରିୟା ଓ ଇଟାଲୀ ମଧ୍ୟରେ ଯୁଦ୍ଧ ବେଳରେ ପରସ୍ପର ସାହାଯ୍ୟ ପାଇ ବିସ୍‌ମାର୍କ ଗୋଟିଏ ସନ୍ଧି ବାନ୍ଧି ପାରିଥିଲେ । କିନ୍ତୁ ସାମ୍ରାଜ୍ୟ ବଢାଇବା ପାଇଁ ବିସ୍‌ମାର୍କଙ୍କର ଆଦୌ ଇଚ୍ଛା ନ ଥାଏ । କାଇଜର ସାମ୍ରାଜ୍ୟ ବିସ୍ତାରର ଅଭିଳାଷ ପୋଷି ତୁରସ୍କ ସଙ୍ଗରେ ସନ୍ଧି କଲେ ଓ ନିଜର ନୌବଳ ବଢାଇଲେ । ଏଣୁ ବ୍ରିଟିଶ ଜାତି ଆତଙ୍କିତ ହେଲେ । ସେମାନେ ଫ୍ରାନ୍ସ ଓ ରୁଷିଆ ସହିତ ଯୁଦ୍ଧବେଳେ ପରସ୍ପର ସାହାଯ୍ୟ କରିବା ପାଇଁ ଗୋଟିଏ ସନ୍ଧି ମଧ୍ୟ କରିଥିଲେ । ନୌବଳ ବଢାଇବାର କାରଣ ମଧ୍ୟ ଜର୍ମାନୀକୁ ପଚାରି-ଥିଲେ । ଜର୍ମାନୀର ଶକ୍ତି ପରୀକ୍ଷା ସମୁଦ୍ରରେ ହେବ ବୋଲି କାଇଜର ଉତ୍ତର ଦେଇଥିଲେ । ଏଥିରୁ ବ୍ରିଟିଶ ଜାତି ତର୍କ କରି-ଥିଲେ ଯେ, ବ୍ରିଟେନ୍ ସଙ୍ଗେ ଯୁଦ୍ଧ କରିବା ପାଇଁ ଜର୍ମାନୀ ପ୍ରସ୍ତୁତ ହେଉଅଛି । ଏଣୁ ସାମ୍ରାଜ୍ୟ ରଖିବାର ଲୋଭ ନିଜର ନାହିଁ ବୋଲି ପୃଥିବୀରେ ସେମାନେ ପ୍ରଚାର କରୁଥିଲେ । ଭାରତବାସୀ ଉପଯୁକ୍ତ ହେଲେ ଭାରତର ଶାସନଭାର ସେମାନଙ୍କ ହସ୍ତରେ ଅର୍ପଣ କରିବେ ବୋଲି ସେମାନେ ମଧ୍ୟ କହୁଥିଲେ ।

ଶାସନ ପରିଚାଳନାରେ ସାହାଯ୍ୟ ଲାଭ ପାଇଁ ଇଂରେଜମାନେ ଆମଙ୍କୁ ଇଂରେଜୀ ଭାଷା ଶିଖାଇବାକୁ ଆରମ୍ଭ କରିଥିଲେ । ଏ ଦେଶର ଲୋକେ ଇଂରେଜୀ ଭାଷା ଶିଖିବାରୁ ପାଶ୍ଚାତ୍ୟ ଦେଶର ସାହିତ୍ୟ ପଢ଼ି ସ୍ୱାଧୀନତାର ମୂଲ୍ୟ ବୁଝି ପାରିଥିଲେ । ଏଣୁ ଦଳେ ଶିକ୍ଷିତ ବ୍ୟକ୍ତି କଂଗ୍ରେସ ଗଢ଼ିଥିଲେ । ଆଉ ଦଳେ ବିପ୍ଳବର ସୂତ୍ରପାତ କରୁଥିଲେ । କିନ୍ତୁ ଦେଶର ଜନସାଧାରଣଙ୍କ ନିକଟରେ ସ୍ୱାଧୀନତାର ନାମଗନ୍ଧ ପ୍ରବେଶ କରିପାରୁ ନ ଥିଲା । ଜନସାଧାରଣଙ୍କ ସାହାଯ୍ୟ ବିନା ସ୍ୱାଧୀନତା ଲାଭ କରିବା ଅସମ୍ଭବ । କିନ୍ତୁ ବିପ୍ଳବୀମାନେ ଗୋପନରେ ଆନ୍ଦୋଳନ ଚଳାଇ ଥିବାରୁ ଜନସାଧାରଣଙ୍କ ମଧ୍ୟରେ କୌଣସି କଥା ପ୍ରଚାର କରିପାରୁ ନ ଥିଲେ । ମହାତ୍ମାଜୀ ସତ୍ୟ ଓ ସେବାଦ୍ୱାରା ଜନସାଧାରଣଙ୍କ ହୃଦୟରେ ସ୍ୱାଧୀନତା ଲାଭ କରିବାର ଆଶା ସଞ୍ଚାରିତ କରାଇଥିଲେ । ସେଥି ସଙ୍ଗେ ସଙ୍ଗେ କିପରି ନିର୍ଭୀକ ହେବାକୁ ହୁଏ ତାହାର ଆଦର୍ଶ ମଧ୍ୟ ଦେଖାଇ ଦେଉଥିଲେ । ଯୁଦ୍ଧ ଲାଗିଗଲା । ବ୍ରିଟିଶ ଜାତି କେବଳ ବଚନରେ ଦାତା-ପଣ ଦେଖାଇଲେ । ମହାତ୍ମାଜୀଙ୍କ ଉପଦେଶ ଆଦୌ ଗ୍ରହଣ କଲେ ନାହିଁ । ଏ ଦେଶର ସ୍ୱାଧୀନତା-ଆନ୍ଦୋଳନକୁ ବିନାଶ କରିବା ପାଇଁ ରାଉଲଟ ଆଇନ ପ୍ରଣୟନ କଲେ ।

ରାଉଲଟ କମିଟିର ପ୍ରସ୍ତାବ ସମ୍ବାଦ-ପତ୍ରରେ ପ୍ରକାଶିତ ହେବା ମାତ୍ରେ ଶଙ୍କରଲାଲ ବାଙ୍କର ଓ ଉମର ସୋବାନି ତାହାର ପ୍ରତିରୋଧ କରିବା ପାଇଁ ମହାତ୍ମାଜୀଙ୍କୁ କହିଥିଲେ । ମହାତ୍ମାଜୀ ଅହମଦାବାଦ ଗଲେ । ସେଠାରେ ବଲ୍ଲଭଭାଇଙ୍କ ସଙ୍ଗେ ଦେଖା ହେଲା । ରାଉଲଟ କମିଟିର ପ୍ରସ୍ତାବକୁ ପ୍ରତିରୋଧ କରିବା ଉଚିତ ବୋଲି ମହାତ୍ମାଜୀ ବଲ୍ଲଭଭାଇଙ୍କୁ ଜଣାଇ ଦେଇଥିଲେ । ତତ୍ପରେ ଗୋଟିଏ ପ୍ରତିଜ୍ଞା

ସଭା ଡକା ହୋଇଥିଲା । ଏହି ସଭାରେ ସ୍ଥିର ହେବା ଅନୁସାରେ 'ସତ୍ୟାଗ୍ରହ-ସଭା' ନାମରେ ଗୋଟିଏ ସ୍ୱତନ୍ତ୍ର ଅନୁଷ୍ଠାନ ଗଢ଼ା ହୋଇଥିଲା । ବିଶିଷ୍ଟ ସଭ୍ୟମାନେ ବମ୍ବେଇର ଅଧିବାସୀ ଥିବାରୁ ତାହାର କାର୍ଯ୍ୟାଳୟ ବମ୍ବେଇରେ ରଖା ଯାଇଥିଲା ।

ରାଉଲାଟ କମିଟିର ପ୍ରସ୍ତାବକୁ ପ୍ରତିରୋଧ କରି ଦେଶରେ ଆନ୍ଦୋଳନ ଲାଗିବା ବେଳେ ପ୍ରସ୍ତାବକୁ ଆଇନରେ ପରିଣତ କରିବା ପାଇଁ ସରକାର ଦୃଢ଼ ସଂକଳ୍ପ ହୋଇଗଲେ । ଆଇନର ପାଣ୍ଡୁଲିପି ଆଲୋଚନା କରିବା ପାଇଁ ବଡ଼ଲାଟଙ୍କ ସଭାକୁ ମହାତ୍ମାଜୀ ଥରେ ମାତ୍ର ଯାଇଥିଲେ । ସେତେବେଳେ ଶ୍ରୀନିବାସ ଶାସ୍ତ୍ରୀଜୀ ପାଣ୍ଡୁଲିପିର ପ୍ରତିବାଦ କରି ଯେଉଁ ବକ୍ତୃତା ଦେଇଥିଲେ ତାହା ଯେପରି ଓଜସ୍ୱିନୀ ସେପରି ପ୍ରାଣସ୍ପର୍ଶୀ ମଧ୍ୟ ହୋଇଥିଲା । ମହାତ୍ମାଜୀ ମଧ୍ୟ ବହୁ ଅନୁନୟ-ବିନୟ କରି ବଡ଼ଲାଟଙ୍କୁ କହିଥିଲେ । କିନ୍ତୁ ଶୁଣିଲେ ମଧ୍ୟ ବଡ଼ଲାଟ-ଙ୍କର ନିଦ ଭାଙ୍ଗିଲା ନାହିଁ । ଚେଇଁ ଶୋଇଥିବା ଯିଏ ତାକୁ ଉଠେଇବ କିଏ ? ଯୁଦ୍ଧ ଲାଗି ଥିବାରୁ ସରକାର ଆପଣା ସ୍ୱଭାବ ଟିକିଏ ଘୋଡାଇ ରଖିଥିଲେ । ଯୁଦ୍ଧ ସରିଗଲା । ଏଥର ନିଜ ରୂପ ଦେଖାଇବାକୁ ଡରନ୍ତେ କାହିଁକି ?

ମହାତ୍ମାଜୀ ଏହି ପାଣ୍ଡୁଲିପି ଯେପରି ଆଇନରେ ପରିଣତ ହୋଇ ନ ପାରେ ତାହାର ଉପାୟ ସ୍ଥିର କରିବା ପାଇଁ ଅସୁସ୍ଥ ଶରୀରରେ ମାନ୍ଦ୍ରାଜ ଗଲେ । ସେଠାରେ ଶ୍ରୀଯୁକ୍ତ ରାଜଗୋପାଲାଚାରୀଙ୍କ ଗୃହରେ ଅତିଥି ହୋଇଥିଲେ । କିପରି ପ୍ରତିରୋଧ କରିବାକୁ ହେବ ତାହା ସେଠାରେ ଗୋଟିଏ କ୍ଷୁଦ୍ର ସଭାରେ ବିଚାର କରୁଥିଲେ । ସେତିକି-ବେଳେ ଖବର ପାଇଲେ ଯେ, ପାଣ୍ଡୁଲିପି ଆଇନରେ ପରିଣତ ହୋଇ-ଗଲା । ଏ ଆଇନ କିପରି ଅମାନ୍ୟ କରିବାକୁ ହେବ ତାହା ଚିନ୍ତା

କରି ସ୍ଥିର କରିବା, ବଡ଼ କଠିନ ବ୍ୟାପାର ଥିଲା । ଚିନ୍ତାରେ ମହାତ୍ମାଜୀଙ୍କୁ ରାତିରେ ନିଦ ହେଲା ନାହିଁ । ଶେଷରେ ସ୍ୱପ୍ନରେ କାହାରି ଠାରୁ ଶୁଣିବା ଭଳି ଅନୁଭବ କଲେ ଯେ ଏ ଆଇନର ପ୍ରତିବାଦ ସ୍ୱରୂପ ଭାରତବାସୀ ଗୋଟିଏ ଦିନ ହରତାଳ ପାଳିବା ଉଚିତ । ଏହିଦିନ ପ୍ରତ୍ୟେକ ଭାରତବାସୀ ଦୈନିକ କାର୍ଯ୍ୟ ବନ୍ଦ କରି ଉପବାସ ପାଳିବେ ଓ ମନ୍ଦିରକୁ ଯାଇ ପ୍ରାର୍ଥନା କରିବେ । ଏହାକୁ ଯୋଗ-ଲବ୍ଧ ଜ୍ଞାନ ବୋଲି ଆମର ବୁଝିବା ଉଚିତ । ରାତ୍ରି ଶୁଦ୍ଧ ରହି ଗଭୀର ଚିନ୍ତା କଲେ କଠିନ ସମସ୍ୟା ସମାଧାନ କରିବାର ପ୍ରକୃଷ୍ଟ ଉପାୟ ଅନେକ ଅନେକ ଦେଖାଯାଏ ।

ମହାତ୍ମାଜୀ ଆଇନର ପ୍ରତିରୋଧ କରିବା ପାଇଁ ହରତାଳ ପାଳିବା କଥା ଶ୍ରୀଯୁକ୍ତ ରାଜଗୋପାଳଚାରୀଙ୍କୁ କହିଲେ । ସେ ତାହା ପସନ୍ଦ କଲେ । ୧୯୧୯ ସାଲର ମାର୍ଚ୍ଚ ମାସର ୩୦ ତାରିଖ ହରତାଳ ପାଳିବା ପାଇଁ ପ୍ରଥମେ ଧାର୍ଯ୍ୟ ହେଲା । ପରେ ଏପ୍ରିଲ୍ ୬ ତାରିଖକୁ ଏହିଦିନ ଘୁଞ୍ଚାଇ ଦିଆ ହୋଇଥିଲା । କିନ୍ତୁ ଦିଲ୍ଲୀରେ ଦିନ ଘୁଞ୍ଚିବା ସମ୍ବାଦ ପହଞ୍ଚି ପାରି ନ ଥିବାରୁ ୩୦ ତାରିଖ ଦିନ ସେଠାରେ ହରତାଳ ପାଳନ କରା ଯାଇଥିଲା । ସେଠାରେ ହିନ୍ଦୁ ମୁସଲମାନ ହରତାଳ ପାଳିବା ପାଇଁ ମିଶି ଯାଇଥିଲେ । ବକ୍ତୃତା ଦେବା ପାଇଁ ସ୍ୱାମୀ ଶ୍ରଦ୍ଧାନନ୍ଦଙ୍କୁ ମୁସଲମାନମାନେ ମସଜିଦକୁ ଆମନ୍ତ୍ରଣ କରିଥିଲେ । ୬ ତାରିଖ ଦିନ ହରତାଳ ପାଳିବାରେ ଉପସ୍ଥିତ ହେବା ପାଇଁ ବମ୍ବେଇରୁ ମହାତ୍ମାଜୀଙ୍କୁ ଡକରା ଆସିଲା । ସେଠାକୁ ସେ ଗଲେ; ହରତାଳ ମହାସମାରୋହରେ ପାଳନ କରାଗଲା । ସେଠାରେ ଲବଣ-ଟିକସର ଆଇନ ନ ମାନିବା ପାଇଁ ମହାତ୍ମାଜୀ ପ୍ରଥମେ ସ୍ଥିର କଲେ । ସେତେବେଳକୁ ମହାତ୍ମାଜୀଙ୍କ 'ହିନ୍ଦୁସ୍ୱରାଜ' ଓ 'ସର୍ବୋଦୟ' ନାମକ

ହୁଇଗଣ୍ଡି ବନ୍ଦ ସରକାର ବାଜ୍ୟାପ୍ତ କରିଥିଲେ । ମହାତ୍ମାଜୀ ତାହାକୁ ଛପାଇ ବିକିଲେ । କିନ୍ତୁ ସରକାର ଆପତ୍ତି କଲେ ନାହିଁ । ସେଥିରୁ ଯାହା ମିଳିଲା ତାହା ଆଇନ ଅମାନ୍ୟ କାର୍ଯ୍ୟରେ ଲାଗିବା ପାଇଁ ରଖା ଗଲା ।

ଦିଲ୍ଲୀ ଓ ଅମୃତ ସହରରୁ ମହାତ୍ମାଜୀଙ୍କ ପାଖକୁ ଆମନ୍ତ୍ରଣ ଆସି ଥିଲା । ଏପ୍ରିଲ୍ ୭ ତାରିଖ ଦିନ ସେ ଯାତ୍ରା କଲେ । ୮ ତାରିଖ ଦିନ ମଥୁରାଠାରେ ସମ୍ବାଦ ପାଇଲେ ଯେ ତାହାଙ୍କୁ ଗିରଫ କରିବା ପାଇଁ ସରକାର ସ୍ଥିର କରି ଅଛନ୍ତି । ପଲ୍ଅଲ୍ ଷ୍ଟେସନରେ ପହଞ୍ଚିବା ପୂର୍ବରୁ ତାହାଙ୍କ ଉପରେ ଏକ ନୋଟିସ ଜାରି ହୋଇଥିଲା । ତହିଁରେ ଲେଖାଥିଲା ଯେ, ତାହାଙ୍କ ଉପସ୍ଥିତିରେ ଶାନ୍ତିଭଙ୍ଗର ଆଶଙ୍କା ଥିବାରୁ ପଞ୍ଜାବ ଭିତରକୁ ପଶିବା ପାଇଁ ତାହାଙ୍କୁ ମନା କରି ଯାଇ-ଅଛି । ମହାତ୍ମାଜୀ ମାନିଲେ ନାହିଁ । କାହିଁକି ମାନନ୍ତେ ? ତାହାଙ୍କ ଉପସ୍ଥିତିରେ କୌଣସିଠାରେ ଶାନ୍ତିଭଙ୍ଗ ଘଟେ ନାହିଁ ବା ଘଟିବାର ସମ୍ଭାବନା ନ ଥାଏ । ଏହି ଆତ୍ମବିଶ୍ୱାସ ଯୋଗୁଁ ସେ ନିର୍ଭୀକ ହୋଇ ଥାଆନ୍ତି । କିନ୍ତୁ ସରକାର କେବଳ ସ୍ୱାର୍ଥ-ରକ୍ଷା ଲଗି ନାନା କୂଟନୀତି ପ୍ରୟୋଗ କରୁଥାଆନ୍ତି । ତଥାପି ସରକାର ଜାଣି ଥାଆନ୍ତି ଯେ କଂସାର ଘରର ପାତ୍ରକୁ ଲୁଲା ବାଜି ଭଙ୍ଗ କଲେ ଅନିଷ୍ଟ ଛଡ଼ା ଇଷ୍ଟ କଦାପି ନାହିଁ ।

ପଲ୍ଅଲ୍-ଷ୍ଟେସନରେ ଗାଡ଼ି ପହଞ୍ଚିଲା । ପୁଲିସ ସେଠାରେ ମହାତ୍ମାଜୀଙ୍କୁ ଗାଡ଼ିରୁ ଉତ୍ତାରି ଦେଲା । ଦିଲ୍ଲୀରୁ ଆସୁଥିବା ଗୋଟିଏ ଗାଡ଼ିର ତୃତୀୟ ଶ୍ରେଣୀରେ ବସାଇ ମହାତ୍ମାଜୀଙ୍କୁ ମଥୁରା ନିଆ ହେଲା । ସେଠାରୁ ବମ୍ବେଇ ଯାଉଥିବା ଗାଡ଼ିରେ ତାହାଙ୍କୁ ମଧୁପୁର ଷ୍ଟେସନକୁ ନିଆ ହେଲା । ଲାହୋରରୁ ଆସୁଥିବା ଡାକ ଗାଡ଼ିରେ ଆସି ଇନ୍‌ସ୍-

ପେଙ୍ଗ୍‌ଙ୍କରେ ବାଜ୍‌ରଂ ସାହେବ ସେଠାରେ ପହଞ୍ଚିଲେ । ସେ ନିଜ ସଙ୍ଗରେ ଗୋଟିଏ ପ୍ରଥମ ଶ୍ରେଣୀ ଡବାରେ ମହାତ୍ମାଜୀଙ୍କୁ ଚଢ଼ାଇ ଆଳାପ କରିବାକୁ ଲଗିଲେ । ପଞ୍ଜାବର ଲାଟ ଓଡ଼ାୟାରଙ୍କ ଗୁଣ ଗାନ କରି ମହାତ୍ମାଜୀଙ୍କ ପ୍ରତି ଲାଟସାହେବଙ୍କର କୌଣସି ବ୍ୟକ୍ତିଗତ ବିଦ୍ୱେଷ ନାହିଁ ବୋଲି ବାଜ୍‌ରଂ ସାହେବ କହୁଥିଲେ । ସହଜରେ ବୁଝିବାକୁ ହେଲେ ବିଶ୍ୱାମିତ୍ରଙ୍କ ତପସ୍ୟା ଭଙ୍ଗପାଇଁ ସେ ମେନକାର ବେଶ ପିନ୍ଧି ଆସିଥିଲେ । ବାଜ୍‌ରଂ ପଞ୍ଜାବ ସୀମା ନ ଡେଇଁବା ପାଇଁ ମହାତ୍ମାଜୀଙ୍କୁ କହୁଥିଲେ । ନିଜ ଇଚ୍ଛାରେ ଫେରି ଯିବେ ନାହିଁ ବୋଲି ମହାତ୍ମାଜୀ ଉତ୍ତର ଦେଉଥିଲେ । ଅଭିନ ପ୍ରୟୋଗ କରିବେ ବୋଲି ବାଜ୍‌ରଂ କହୁଥିଲେ ।

ସୁରାଟରେ ଗାଡ଼ି ପହଞ୍ଚିଲା । ବାଜ୍‌ରଂ ଆଉ ଜଣେ ପୁଲିସ୍ କର୍ମଚାରୀଙ୍କ ଜିମାରେ ମହାତ୍ମାଜୀଙ୍କୁ ଛାଡ଼ିଲେ । ସେ ବମ୍ବେଇ ପହଞ୍ଚାଇ ଦେଇ "ଆପଣ ଏଥର ମୁକ୍ତ" ବୋଲି କହିଥିଲେ । କିନ୍ତୁ ସେତେବେଳକୁ ମହାତ୍ମାଜୀଙ୍କ ଗିରଫ ଶୁଣି ଅନେକ ସ୍ଥାନରେ ଜନତା ଉତ୍ତେଜିତ ହୋଇ ପଡ଼ିଥିଲେ । ବୋମ୍ବେଇରୁ ମହାତ୍ମାଜୀ ମେରିନ୍‌ଲାଇନ୍ ଷ୍ଟେସନକୁ ଯାଇଥିଲେ । ସେଠାରେ ସେ ରେବାଶଙ୍କର ଜାବେରୀଙ୍କ ଘରେ ଅତିଥି ହୋଇଥିଲେ । ସେଙ୍ଗ ସଙ୍ଗେ ଖବର ପାଇଥିଲେ ଯେ, ପାଇଧୁନୀଠାରେ ଲୋକେ ଉତ୍ତେଜିତ ହୋଇ ଅଛନ୍ତି । ଶୁଣିବା ମାତ୍ରେ ମହାତ୍ମାଜୀ ସେଠାକୁ ଯାତ୍ରା କଲେ । ସେଠାରେ ଗୋଟିଏ ଶୋଭାଯାତ୍ରା ବାହାରୁ ଥିଲା । 'ବନ୍ଦେ ମାତରଂ' ଓ 'ଅଲ୍ଲାହୋ ଅକବର' ଧ୍ୱନୀ ଆକାଶ ଫଟାଇ ଦେଉଥିଲା । ଦଳେ ଅଶ୍ୱାରୋହୀ ପୁଲିସ ଥିଲେ ଏବଂ ଢେଲା-ପଥର ମଧ୍ୟ ବୃଷ୍ଟି ହେଉଥିଲା । ଜନତାକୁ ଶାନ୍ତ କରାଇବାକୁ ମହାତ୍ମାଜୀ ଯତ୍ନ କଲେ । ସେଠାରୁ ସେ କମିଶନରଙ୍କ ପାଖକୁ ଯାଇ ଶାନ୍ତିଭଙ୍ଗ କଥା ଆଲୋଚନା କରିଥିଲେ । ସେଠାରେ ବାଜ୍‌ରଂ ମଧ୍ୟ

ଥିଲେ । ସେଠାରେ କମିଶନର କହିଲେ, ଆପଣଙ୍କ ଉପଦେଶ ସହଜରେ ଲୋକେ ମାନନ୍ତି । ଆମେ ଆଦ୍ୟରୁ ସାବଧାନ ନୋହି-ଥିଲେ ଅବସ୍ଥା ଆମ କ୍ଷମତାର ବହିର୍ଭୂତ ହୋଇ ପଡି ଥାଆନ୍ତା । ଆଇନ ଅମାନ୍ୟ କରିବା କଥା ଲୋକେ ଶୀଘ୍ର ପସନ୍ଦ କରନ୍ତି । କିନ୍ତୁ ପ୍ରକୃତ ଲୋକଙ୍କୁ ଶାନ୍ତ ରଖାଇ ଦିଏ ନାହିଁ ।

ମହାତ୍ମାଜୀ କହିଲେ, "ଏଠାରେ ଆପଣଙ୍କ ସହିତ ମୋର ମତ-ଭେଦ ଅଛି । ହିଂସାପ୍ରବଣ ହେବା ମନୁଷ୍ୟର ସ୍ୱଭାବ ନୁହେ । ଶାନ୍ତ ରହିବା ମନୁଷ୍ୟର ସାଧାରଣ ସ୍ୱଭାବ ।" ଏହିପରି ଆଲୋଚନା ସଙ୍ଗେ ସଙ୍ଗେ ସେତେବେଳକୁ ପଞ୍ଜାବର ଅମୃତ ସହର ଓ ଭାରତର ଅନ୍ୟାନ୍ୟ ସ୍ଥାନରେ ଘଟିଥିବା ଉତ୍ତେଜନା ଫଳ କମିଶନର ସାହେବ ମହାତ୍ମାଜୀଙ୍କୁ କହିଲେ । ମହାତ୍ମାଜୀ ଉତ୍ତର ଦେଲେ ମୋତେ ଯଦି ପଞ୍ଜାବ ଯିବାକୁ ମନା କରାଯାଇ ନ ଥାଆନ୍ତା ତେବେ ସେଠାରେ ଶାନ୍ତିଭଙ୍ଗ ଘଟି ନ ଥାଆନ୍ତା ।" ଏପରି ଖାଣ୍ଟି ସତ୍ୟ ମହାତ୍ମାଜୀଙ୍କ ହୃଦୟରୁ ବାହାରୁଥିଲା ତାହା ବୁଝିବା ସହଜ ନୋହିଲେ ମଧ୍ୟ ପ୍ରାଣସ୍ପର୍ଶୀ । ଯାହା ପଢ଼ିଲେ ବା ଶୁଣିଲେ ଚିରକାଳ ପାଇଁ ହୃଦୟରେ ଅଙ୍କିତ ହୋଇ ରହେ ତାହାକୁ ସତ୍ୟ କହନ୍ତି ।

ମହାତ୍ମାଜୀ ଅହମଦାବାଦର ନିଜ ଆଶ୍ରମକୁ ଫେରିଗଲେ । ସେଠାରେ ଅନସୂୟା ବେନଙ୍କୁ ଲୋକେ ଭକ୍ତି କରୁଥିଲେ । ସେ ଧରା ହୋଇ ଅଛନ୍ତି ବୋଲି କେହି ରଟାଇ ଦେଇ ଥିବାରୁ ଅହମଦାବାଦରେ କୁଲିମାନେ ପାଗଳ ହୋଇ ଯାଇଥିଲେ । ନିକଟବର୍ତ୍ତୀ ଅଞ୍ଚଳରେ ଜଣେ ସରକାରୀ କର୍ମଚାରୀ ଖୁନ୍ ହୋଇଥିଲେ । ଏଣୁ ଅହମଦା-ବାଦରେ ସାମରିକ ଆଇନ ଜାରି ହୋଇ ଥିଲା । ଷ୍ଟେସନରେ ପହଞ୍ଚିବା ମାତ୍ରେ ଜଣେ ପୁଲିସ୍ କର୍ମଚାରୀ ମହାତ୍ମାଜୀଙ୍କୁ କମିଶନରଙ୍କ ପାଖକୁ ନେଇ ଯାଇଥିଲା । ଗୋଳମାଳ ପାଇଁ ତାଙ୍କ ଆଗରେ ମହାତ୍ମାଜୀ ଦୁଃଖ

ପ୍ରକାଶ କରିଥିଲେ । ସାମରିକ ଆଇନ ଜାରି କରିବାର ପ୍ରୟୋଜନ ନ ଥିଲା ଓ ଶାନ୍ତି ଫେରାଇ ଆଣିବାକୁ ଯଥାସାଧ୍ୟ ଚେଷ୍ଟା କରିବେ ବୋଲି ମହାତ୍ମାଜୀ କମିଶନରଙ୍କୁ କହିଲେ । ସାବରମତୀ—ଅଷ୍ଟ-ପଲ୍ଲୀଆରେ ଗୋଟିଏ ସାଧାରଣ ସଭା କରିବା ପାଇଁ ଅନୁମତି ମଧ୍ୟ ମାଗି ଆଣିଲେ । ସଭା ହେଲା । ମହାତ୍ମାଜୀ ଅହିଂସା ନୀତି ଲୋକଙ୍କୁ ବୁଝାଇ ଦେଲେ । ନିଜେ ତିନିଦିନ ଉପବାସ କରି ଶାନ୍ତିଭଙ୍ଗ ହୋଇଥିବାରୁ ପ୍ରାୟଶ୍ଚିତ୍ତ କରିବେ ବୋଲି ଲୋକଙ୍କୁ ଶୁଣାଇ ଦିନେ ଉପବାସ କରିବା ପାଇଁ ଲୋକମାନଙ୍କୁ ଅନୁରୋଧ କରିଥିଲେ । ଏହାଛଡ଼ା ଦଙ୍ଗାରେ ଯୋଗ ଦେଇ ଅପରାଧ କରିଥିବା ଲୋକମାନଙ୍କୁ ଅପରାଧ ସ୍ୱୀକାର କରିବା ପାଇଁ ବୁଝାଇ ସେମାନଙ୍କ ଅପରାଧ କ୍ଷମା କରିବା ନିମନ୍ତେ ସରକାରଙ୍କୁ ମଧ୍ୟ କହିଥିଲେ । କିନ୍ତୁ ସରକାର ସେ କଥା ଆଦୌ ଶୁଣିଲେ ନାହିଁ । ଯାହା ହେଉ ମହାତ୍ମାଜୀ ସତ୍ୟାଗ୍ରହ ବନ୍ଦ କରିବା ନିମନ୍ତେ କହିଲେ । ଏଥିରେ ଅନେକ ଲୋକ ବିରକ୍ତ ହେଲେ । ସେମାନଙ୍କ ମତରେ ସତ୍ୟାଗ୍ରହରେ ସବୁ ଜାଗାରେ ଶାନ୍ତି ରକ୍ଷା କରିବା-ଅସମ୍ଭବ । କିନ୍ତୁ ସେମାନେ ଜାଣନ୍ତି ନାହିଁ ଯେ ଶାନ୍ତି ରକ୍ଷା ନ କଲେ ସତ୍ୟାଗ୍ରହ ବଞ୍ଚି ରହିବା ଅସମ୍ଭବ । ସତ୍ୟ ଓ ଶାନ୍ତି ଏକାଧାରରେ ମହାତ୍ମାଜୀଙ୍କ ଠାରେ ମୂଳ ହୋଇଥିବାରୁ ତାହାଙ୍କ ଇଙ୍ଗିତରେ ସତ୍ୟାଗ୍ରହ ରୁଦ୍ରମୂର୍ତ୍ତି ଧାରଣ କରୁଥିଲା । ଯେଉଁ ଉପାଦାନରୁ ଯାହାର ଜନ୍ମ ତାହାଠାରେ ସେହି ଉପାଦାନର ଗୁଣ ଥାଏ । କ୍ଷୀରରୁ ଦହି ଜାତ ହେଲେ କ୍ଷୀରର ଗୁଣ ମଧ୍ୟ ଦହିରେ ଥାଏ । କ୍ଷୀର ନ ରହିଲେ ଦହିର ସତ୍ତା ମଧ୍ୟ ରହିବ ନାହିଁ । ଅହିଂସା ନ ଥିଲେ ସତ୍ୟର ପ୍ରକାଶ ଘଟେ ନାହିଁ । ସତ୍ୟ ଯେଉଁ ପ୍ରତିରୋଧରେ ନାହିଁ ତାହାକୁ ସତ୍ୟାଗ୍ରହ କୁହାଯାଇ ନ ପାରେ । ସତ୍ୟ ପାଇଁ ଅହିଂସାରେ ଯେ ପ୍ରାଣ ଦାନ କରେ ତାହା ପ୍ରତି ଲକ୍ଷ ଲକ୍ଷ ଲୋକଙ୍କ ହୃଦୟରେ

ମହାନୁଭୂତ ଜାଗରିତ ହୁଏ । ଏହା ଯେଉଁମାନେ ବୁଝନ୍ତି ନାହିଁ ସେମାନେ ଅହିଂସା ନୀତରେ ସତ୍ୟାଗ୍ରହ ପ୍ରତିଷ୍ଠିତ ବୋଲି ବିଶ୍ୱାସ କରି ପାରୁ ନ ଥିଲେ । କିନ୍ତୁ ମହାତ୍ମାଜୀଙ୍କ ବିଶ୍ୱାସ ଅଟଳ ଥିଲା । ସେ ଶାସ୍ତ୍ରର ନୀତକୁ କେବଳ ଅନ୍ଧ ଭାବରେ ଅନୁସରଣ କରୁ ନ ଥିଲେ । ନିଜେ ସତ୍ୟ ଓ ଅହିଂସାର ପଥ ଅନୁସରଣ କରୁ ଥିବାରୁ ତାହାଙ୍କ ହୃଦୟରୁ ଯେଉଁ ଆନ୍ଦୋଳନ ଜନ୍ମ ଲଭିଥିଲା । ତାହା କ୍ରମଶଃ ଶାଖା ଓ ପ୍ରଶାଖା ମେଲି ମହାରଣ୍ୟର ପରିଣତ ହୋଇ ଅତ୍ୟାଗ୍ରର ତାପରେ ଦଗ୍ଧ ମରୁଭୂମିରେ ଅଗଣିତ ପ୍ରାଣୀଙ୍କୁ ଆଶ୍ରୟ ଦାନ କରୁଥିଲା । ଏଣୁ ମହାତ୍ମାଜୀ ସତ୍ୟ ଓ ଅହିଂସାରେ ଅଟଳ ବିଶ୍ୱାସ ରଖି ଶାନ୍ତିଭଙ୍ଗର ଆଶଙ୍କା ଜାତ ହେଲେ ସତ୍ୟାଗ୍ରହ ବନ୍ଦ କରି ଦେଉଥିଲେ ।

ଅହମଦାବାଦ ଠାରୁ ଅଳ୍ପଦିନ ଭିତରେ ସେ ନଡ଼ିଆଦ ଗଲେ । ସେଠାରେ ସେ ଶୁଣିଲେ ଯେ ଆଇନ ଅମାନ୍ୟରେ ଶାନ୍ତି-ଭଙ୍ଗ କରି ଖେଡ଼ା ଜିଲାର ବହୁତ ଲୋକ ଗିରଫ ହୋଇ ଅଛନ୍ତି । ଉପଯୁକ୍ତ ଶିକ୍ଷା ଦେବା ପୂର୍ବରୁ ଲୋକମାନଙ୍କୁ ଆଇନ ଅମାନ୍ୟ କରିବା ପାଇଁ କହିବା ତାହାଙ୍କର ହିମାଳୟ ସମାନ ପ୍ରକାଣ୍ଡ ଭୁଲ ହୋଇଅଛି ବୋଲି ସେ ସେଠାରେ ହୃଦୟଙ୍ଗମ କଲେଥିଲେ । ସେଠାରେ ସାଧାରଣ ସଭାରେ ନିଜ ଭୁଲ ସ୍ୱୀକାର କରିବାରୁ ଅନେକ ଲୋକ ତାହାଙ୍କୁ ଥଟ୍ଟା କରିଥିଲେ । ସେମାନେ ଜାଣନ୍ତି ନାହିଁ ଯେ, ମହାନୁଭବ ବ୍ୟକ୍ତି ଛଡ଼ା ଅନ୍ୟ ଲୋକ ଦୋଷ ସ୍ୱୀକାର କରିବାକୁ କୁଣ୍ଠିତ ହୁଅନ୍ତି । ଅନେକ ଲୋକ ନିଜର ଦୋଷ ବୁଝିଲେ ମଧ୍ୟ ସ୍ୱୀକାର କରିବା ଦୂରେ ଥାଉ ତାହାକୁ ଘୋଡ଼ାଇବା ପାଇଁ ନାନା ପ୍ରକାର ମିଥ୍ୟା ଆଶ୍ରୟ ନେଇ ଥାଆନ୍ତି । ଅହଙ୍କାର ଯେଉଁମାନଙ୍କର ଥାଏ ସେମାନେ ନିଜ ଦୋଷ ସ୍ୱୀକାର କରନ୍ତି ନାହିଁ । ନିଜ

କ୍ଷୁଦ୍ରସ୍କୁ ମାପକାଠି କରି ତହିଁରେ ମହାତ୍ମାଙ୍କୁ ମାପିବାକୁ ପ୍ରୟାସ କଲେ, ସେମାନଙ୍କର ସେ ପ୍ରୟାସ ଅବଶ୍ୟ ବିଫଳ ହେବ । ସେଥି-ପାଇଁ ମହାତ୍ମାଜୀ କହି ଅଛନ୍ତି ପରର ଦୋଷକୁ ଛୋଟ ଓ ନିଜର ଦୋଷକୁ ବଡ ଯେ ମନେ କରିପାରେ ସେ ଯଥାର୍ଥ ରୂପେ ଦୋଷ ତୁଳନା କରିପାରେ ।

ଦୁର୍ଜନ ଲୋକଙ୍କ ପାଇଁ ଆଇନ ପ୍ରଣୟନ କରି ଯାଇଅଛି । ଚୋରି ବିରୁଦ୍ଧରେ ଆଇନ ନ ଥିଲେ ମଧ୍ୟ ଚୋରି କରିବା ପାଇଁ ସାଧୁ ଲୋକର ପ୍ରବୃତ୍ତି ଜନ୍ମିବ ନାହିଁ । କିନ୍ତୁ ବିନା ଆଲୁଅରେ ସାଇକଲ ଅନ୍ଧାରରେ ଚଳାଇଲେ ଦୋଷାବହ ବୋଲି ଯେଉଁ ଆଇନ ଅଛି ତାହାକୁ ଅମାନ୍ୟ କରିବାକୁ ସେ କୁଣ୍ଠିତ ହେବ ନାହିଁ । ଏ ବିଷୟରେ ବେଶୀ ସତର୍କ ହେବା ପାଇଁ ଉପଦେଶ ଦେଲେ ମଧ୍ୟ ତାହା ସେ ଗ୍ରହଣ କରିବା ସନ୍ଦେହଜନକ । କିନ୍ତୁ ଏଭଳି ଲୋକର ଆଇନ ଅମାନ୍ୟ କରିବା ଠାରୁ ସତ୍ୟାଗ୍ରହୀ ଆଇନ ଅମାନ୍ୟ କରିବା ପୃଥକ୍ । ସତ୍ୟାଗ୍ରହୀ ନିଜର ସ୍ୱାଧୀନ ଇଚ୍ଛାରେ ଓ ବିଚାରରେ ସମାଜର ଆଇନକୁ ମାନିଥାଏ । କାରଣ, ତାହା ମାନିବାକୁ ସେ ପବିତ୍ର କାର୍ଯ୍ୟ ମଣିଥାଏ । ସମାଜର ଆଇନକୁ ଯେ ଯଥାର୍ଥ ରୂପେ ମାନିଥିବ ସମାଜର କେଉଁ ଆଇନ ହିତକର ଓ କେଉଁ ଆଇନ ଅନିଷ୍ଟକର ସେ ବିଚାର କରି ପାରିବ । ଯାହାର ସେ ବିଚାର ଅଛି ଆଇନ ଅମାନ୍ୟ କରିବା ପାଇଁ ତାହାର ଅଧିକାର ଅଛି । ଏ ସମସ୍ତ କଥା ଆଇନ ଅମାନ୍ୟ ସମ୍ବନ୍ଧରେ ମହାତ୍ମାଜୀ ଆମ୍ଭଙ୍କୁ ବୁଝାଇ ଅଛନ୍ତି । ଏହାର ତାତ୍ପର୍ଯ୍ୟ କଅଣ ! ଯେଉଁ ଆଇନଟି ଅନିଷ୍ଟକର ତାହା ଅମାନ୍ୟ କରିବା ବିଧେୟ । କିନ୍ତୁ ହିଂସାରେ ଚାଳିତ ହେଲେ ଇଷ୍ଟାନିଷ୍ଟ ଜ୍ଞାନ ରହେ ନାହିଁ । ହିତକର ଆଇନ ଅମାନ୍ୟ କରିବାକୁ ମଧ୍ୟ ପ୍ରବୃତ୍ତ ଜନ୍ମେ । ଏହାର ପରିଣାମ ନିଜ ପକ୍ଷରେ ଅନିଷ୍ଟକର ବୋଲି ଜ୍ଞାନ ମଧ୍ୟ ରହେ ନାହିଁ ।

ଏଣେ ଅହିଂସା ନୀତିରେ ସତ୍ୟାଗ୍ରହ ଆନ୍ଦୋଳନ ନିମନ୍ତେ ଦେଶକୁ ପ୍ରସ୍ତୁତ କରିବା ଲାଗି ମହାତ୍ମାଜୀ ଯେତିକ ଲାଗି ଥାଆନ୍ତି ସେଣେ ସରକାରଙ୍କ ନଗ୍ନ-ଦମନ-ନୀତିର ତାଣ୍ଡବ-ନୃତ୍ୟ ସେତିକି ବଢୁଥାଏ । ପଞ୍ଜାବ ଏ ନୃତ୍ୟର ପ୍ରଧାନ ରଙ୍ଗଭୂମି ଥିଲା । ସେଠାରେ ସାମରିକ ଆଇନ ନାମରେ ବେ-ଆଇନ ଶାସନ ଜାରି ହୋଇଥିଲା ବୋଲି କହିଲେ ଚଳେ । ଗୋଟି ଗୋଟି କରି ପଞ୍ଜାବର ସବୁ ନେତାଙ୍କୁ ଜେଲ ଭିତରେ ପୂରାଇ ଦିଆ ଯାଇଥିଲା । ରାଜନୈତିକ ବନ୍ଦୀମାନଙ୍କ ବିଚାର ପାଇଁ ଅନେକ ବିଚାରାଳୟ ଖୋଲା ହୋଇଥିଲା । କିନ୍ତୁ ବିଚାର କରିବାର କ୍ଷମତା ଏମାନଙ୍କର ନ ଥିଲା । ଏମାନେ ଉପରିସ୍ଥ ଶାସକଙ୍କ ଯଥେଚ୍ଛାଚାରର ହୁକୁମ କେବଳ ତାମିଲ କରୁଥିଲେ । ପ୍ରମାଣ ନ ଥିଲେ ମଧ୍ୟ ଅନେକ ଲୋକଙ୍କୁ ଦୋଷୀ ବୋଲି ଅଭିଯୁକ୍ତ କରି ଏହି ବିଚାରାଳୟମାନଙ୍କରେ ଦଣ୍ଡ ଦିଆଯାଉଥିଲା । ଜାଲିଆନାୱାଲା ବାଗରେ ନିରୀହ ବାଳକ ବାଳିକା ଓ ସ୍ତ୍ରୀମାନଙ୍କୁ ହତ୍ୟା କରା ଯାଇଥିଲା । ବିଶେଷତଃ ଅମୃତ ସହରରେ ନିରୀହ ସ୍ତ୍ରୀ ପୁରୁଷଙ୍କୁ କିଆ ଭଳି ପେଟରେ ଘୁଷୁରିବା ଦଣ୍ଡ ଦିଆ ଯାଇଥିଲା । ସେତେବେଳେ ଅନେକ ବନ୍ଧୁ ପଞ୍ଜାବକୁ ଯିବା ପାଇଁ ମହାତ୍ମାଜୀଙ୍କୁ ଅନୁରୋଧ କଲେ । କିନ୍ତୁ ସେଠାକୁ ଯିବାକୁ ତାଙ୍କୁ ମନା ଥିଲା । ଯାଇଥିଲେ ସୀମା ନ ଡେଇଁବାରୁ ତାହାଙ୍କୁ ଜେଲରେ ଭର୍ତ୍ତି କରି ଦେଇ ଥାଆନ୍ତେ । ଏଥିରେ କି ଫଳ ହୋଇ ଥାଆନ୍ତା । ମହାତ୍ମାଜୀଙ୍କର ପଞ୍ଜାବ ଯିବାକୁ ଇଚ୍ଛା ଥାଏ । ବଡ଼ଲାଟଙ୍କ ପାଖକୁ ଅନୁମତି ପାଇଁ ଚିଠି ଲେଖୁ ଥାଆନ୍ତି । କିନ୍ତୁ ଅନୁମତି ମିଳେ ନାହିଁ । ତଥାପି ପଞ୍ଜାବରେ ଘଟୁଥିବା ଅତ୍ୟାଚାରର ପ୍ରତିକାର ଚିନ୍ତା କରୁ ଥାଆନ୍ତି । ଇତି ମଧ୍ୟରେ 'ଇୟଙ୍ଗ ଇଣ୍ଡିଆ' ନାମକ ଖଣ୍ଡିଏ ଇଂରେଜୀ ଓ 'ନବଜୀବନ' ନାମକ ଖଣ୍ଡିଏ ଗୁଜୁରାଟୀ କାଗଜ-ପରିଚାଳନାର ସୁଯୋଗ ପାଇଥିଲେ । ସେଥିରେ ଅହିଂସା-ନୀତି

ଓ ସତ୍ୟାଗ୍ରହ ପ୍ରଚାର କରିବା ପାଇଁ ସୁବିଧା ମିଳିଲା । ଏପରି ସମସ୍ୟ ଆସିଥିଲା, ଯେତେବେଳେ ପ୍ରତ୍ୟେକ କାଗଜ ପ୍ରାୟ ୪୦,୦୦୦ ଲେଖାଏଁ କାଟୁଥିଲା ।

ପଞ୍ଜାବରେ ଅତ୍ୟନ୍ତ ଅମାନୁଷିକ ଫଳରେ ଯେଉଁ ଘଟଣା ଘଟି ଗଲା ସେଥି ନିମନ୍ତେ ସେଠାକାର ଲାଟସାହେବ ଓ ଡାୟାର ମହାତ୍ମାଜୀଙ୍କୁ ଦାୟୀ କଲେ । ପଞ୍ଜାବର କେତେକ ଯୁବକ ମଧ୍ୟ ମହାତ୍ମାଙ୍କ ପ୍ରତି କ୍ରୋଧରେ ଜଳି ଉଠିଥିଲେ । ସେମାନଙ୍କ ମତରେ ସତ୍ୟାଗ୍ରହ ବନ୍ଦ ହୋଇ ନ ଥିଲେ ଜାଲିଆନାୱାଲାବାଗରେ ହତ୍ୟାକାଣ୍ଡ ଘଟି ନ ଥାଆନ୍ତା । ଯାହା ହେଉ ପଞ୍ଜାବର ଘଟଣା ସମ୍ପର୍କରେ ଭାରତ ସମ୍ବାଦ-ପତ୍ରମାନଙ୍କରେ ଭୀଷଣ ଆଲୋଚନା ହେଲା । ତଦନ୍ତ କରିବା ନିମନ୍ତେ ସରକାର ଗୋଟିଏ କମିଟି ବସାଇଲେ । ମହାତ୍ମାଜୀଙ୍କ ପରମ ବନ୍ଧୁ ଦୀନବନ୍ଧୁ ଆଣ୍ଡ୍ରୁଜ ସାହେବ ପଞ୍ଜାବରେ ପହଞ୍ଚି ଗଲେ । ପଣ୍ଡିତ ମାଲବ୍ୟଜୀ ଓ ମୋତିଲାଲ ନେହରୁ ପଞ୍ଜାବ ଗଲେ । ବଡ଼ଲାଟଙ୍କ ଠାରୁ ଅନୁମତି ମିଳିବାରୁ ମହାତ୍ମାଜୀ ଗଲେ । ହଣ୍ଟର କମିଟି ପଞ୍ଜାବ ଘଟଣା ତଦନ୍ତ କରିବା ପାଇଁ ସରକାର ନିଯୁକ୍ତ କରିଥିଲେ । କିନ୍ତୁ ଏହି କମିଟି ସଙ୍ଗେ ଅସହଯୋଗ କରି ମହାତ୍ମାଜୀ, ପଣ୍ଡିତ ମୋତିଲାଲ ନେହରୁ, ଦେଶବନ୍ଧୁ ସି: ଆର: ଦାସ, ଅବାସ୍ ତୟାବଜୀ ଓ ଏମ୍, ଆର, ଜୟକାରଙ୍କୁ ନେଇ ଗୋଟିଏ ବେସରକାରୀ କମିଟି ଗଠିତ ହେଲା । ମହାତ୍ମାଜୀ ମଫସଲରେ ଘର ଘର ବୁଲି ପ୍ରମାଣମାନ ସଂଗ୍ରହ କରିଥିଲେ । ସମସ୍ତେ ତଦନ୍ତ କରିସାରି ପ୍ରମାଣ ସଂଗ୍ରହ କଲେ । ରିପୋର୍ଟ ଲେଖିବା ଭାର ମହାତ୍ମାଜୀଙ୍କ ଉପରେ ଲଦି ଦେଲେ । କାରଣ, ସେତେବେଳକୁ ସମସ୍ତେ ବୁଝି ଗଲେଣି ଯେ ଗମ୍ଭୀରରେ ପ୍ରାଣସ୍ପର୍ଶୀ ଭାଷାରେ ଯେ କୌଣସି ବିଷୟ ଲେଖିବା ପାଇଁ ମହାତ୍ମାଜୀଙ୍କର ଅସୀମ କ୍ଷମତା ଅଛି ।

ପଞ୍ଜାବର ତଦନ୍ତ ସରିଲା ବେଳକୁ ଖିଲାଫତ ସମସ୍ୟାର ବିଗ୍ଭର ପାଇଁ ଦିଲ୍ଲୀରେ ହିନ୍ଦୁ ଓ ମୁସଲମାନମାନେ ମିଳି ଗୋଟିଏ ସମ୍ମିଳନୀ—କରୁଥିଲେ । ତୁରସ୍କ ଯୁଦ୍ଧରେ ଜର୍ମାନୀ ସହିତ ମିଶିଥିଲା । ଯୁଦ୍ଧ ସରିବା ଉତ୍ତାରୁ ଜର୍ମାନୀକୁ ଯେପରି ଖଣ୍ଡ ବିଖଣ୍ଡ କରି ଯାଇଥିଲା ସେପରି ଇଉରୋପରେ ଥିବା କେତେଗୁଡ଼ିଏ ମୁସଲମାନ ପ୍ରଦେଶ ତୁର୍କୀରୁ କାଢ଼ି ନିଆ ଯାଇଥିଲା । ସେ ଗୁଡ଼ିକୁ ତୁର୍କୀ ସହିତ ମିଶାଇବା ପାଇଁ ଖିଲାଫତ୍ ଆନ୍ଦୋଳନ ଚାଲିଥିଲା । ସେଥିପାଇଁ ଦିଲ୍ଲୀରେ ବସୁଥିବା ସମ୍ମିଳନୀରେ ଯୋଗ ଦେବାକୁ ମହାତ୍ମାଜୀଙ୍କୁ ନିମନ୍ତ୍ରଣ କରାଯାଇ ଥିଲା । ଖିଲାଫତ୍ ସମସ୍ୟା ସହିତ ଗୋ-ରକ୍ଷା ଓ ବ୍ରିଟିଶ ସରକାର ଯୁଦ୍ଧରେ ଜିତିଥିବା ଉପଲକ୍ଷେ ଅନୁଷ୍ଠିତ ହେଉଥିବା ଶାନ୍ତି-ଉତ୍ସବରେ ଯୋଗ ଦେବା କଥା ବିଗ୍ଭର କରିବା ପାଇଁ ମଧ୍ୟ ସ୍ଥିର ହୋଇଥିଲା । ମହାତ୍ମାଜୀ ଯୋଗ ଦେଇ କହିଥିଲେ ଖିଲାଫତ ସମସ୍ୟା ଅସଲ । ସେଥିରେ ଅନ୍ୟାୟ ବିଗ୍ଭର ହୋଇଥିବାରୁ ସେ ଅନ୍ୟାୟ ପ୍ରତିରୋଧ କରିବା ପାଇଁ ହିନ୍ଦୁମାନେ ମୁସଲମାନ ଭାଇମାନଙ୍କ ସହିତ କାନ୍ଧ ପକାଇ ଲଢ଼ିବେ । ଏଥି ସଙ୍ଗେ ଗୋ-ରକ୍ଷା ପ୍ରଶ୍ନ ଯୋଗ କରିବା ଉଚିତ ନୁହେଁ । ମୁସଲମାନମାନେ ହିନ୍ଦୁଭାଇମାନଙ୍କ ପ୍ରତି ଶ୍ରଦ୍ଧା ବହି ଯଦି ଗୋବଧ ବନ୍ଦ କରନ୍ତି ତେବେ ତାହା ସ୍ୱତନ୍ତ୍ର କଥା । ମହାତ୍ମାଜୀଙ୍କ କଥା ଯୁକ୍ତିଯୁକ୍ତ ବୋଲି ସମସ୍ତେ ସେଠାରେ ଗ୍ରହଣ କରିଥିଲେ । ଏହି ସମ୍ମିଳନୀରେ ବିଦେଶୀ ଦ୍ରବ୍ୟ ବର୍ଜନ ଓ 'ନନ୍-କୋପରେସନ୍' ପ୍ରଭୃତିର କଥା ପ୍ରଥମେ ଉଠିଥିଲା ।

ଦିଲ୍ଲୀର ସମ୍ମିଳନୀ ଉତ୍ତାରେ ଅମୃତ ସହରରେ କଂଗ୍ରେସର ବୈଠକ ବସିଥିଲା । ସେତେବେଳକୁ ବିନା ବିଗ୍ଭରରେ ଜେଲଦଣ୍ଡ ଭୋଗୁଥିବା ପଞ୍ଜାବର ନେତାମାନଙ୍କୁ ସରକାର ଖଲାସ ଦେଇଥିଲେ ।

ସେମାନେ କଂଗ୍ରେସରେ ଯୋଗ ଦେଇ ଥିବାରୁ ଆନନ୍ଦର ସୀମା ନ ଥିଲା । ତହିଁରେ ପୁଣି 'ମଣ୍ଟଫୋର୍ଡ଼' ଶାସନ-ସଂସ୍କାର ସମ୍ରାଟ୍ ଘୋଷଣା କରିଥିଲେ । ଏହାକୁ ଗ୍ରହଣ କରିବା ଉଚିତ୍ କି ନା, ଏ ବିଷୟରେ ବିଚାର ହେଉଥିଲା । ଦେଶବନ୍ଧୁ ସି. ଆର. ଦାସ ଗ୍ରହଣ ନ କରିବା ପାଇଁ ସର୍ବଦା ମତ ଦେଉଥିଲେ । ଅନ୍ୟ କେତେକ ନେତା ଗ୍ରହଣ କରିବା ପାଇଁ ରାଜି ଥିଲେ । ନେତାମାନଙ୍କର ଏପରି ମତଭେଦ ମହାତ୍ମାଜୀଙ୍କୁ ଭଲ ଲାଗୁ ନ ଥିଲା । ଏଣୁ କଂଗ୍ରେସରୁ କିଛିଦିନ ପାଇଁ ଅନ୍ତର ହୋଇ ରହିବା ପାଇଁ ମହାତ୍ମାଜୀ ଭାବୁଥିଲେ । ତାଙ୍କ ମନକଥା ସେ ମାଲବ୍ୟଜୀଙ୍କୁ ଓ ମୋତିଲାଲଙ୍କୁ କହିଥିଲେ । କିନ୍ତୁ ସେମାନେ ମନା କଲେ । ସେମାନଙ୍କୁ ନିଜର ଗୁରୁଜନ ମଣୁଥିବାରୁ ମହାତ୍ମାଜୀ ସେମାନଙ୍କ ମନା ଭାଙ୍ଗି ପାରି ନ ଥିଲେ । ପ୍ରତ୍ୟେକ କ୍ଷେତ୍ରରେ ଅଧିକ ଅଭିଜ୍ଞ ବ୍ୟକ୍ତିମାନଙ୍କୁ ଗୁରୁସ୍ଥାନୀୟ ମଣି ସେମାନଙ୍କୁ ଭକ୍ତି କରିବା ପାଇଁ ଶ୍ରଦ୍ଧା ମହାତ୍ମାଜୀଙ୍କଠାରେ କିପରି ଥିଲା, ତାହାର ନିଦର୍ଶନ ଏଠାରେ ମିଳେ ।

---

## ମହାତ୍ମା ଜୀବନ

### ( ପ୍ରଥମ ଭାଗ )

ମହାତ୍ମାଜୀ କ୍ରମଶଃ ଜନପ୍ରିୟ ହୋଇ ପଡିଲେ । ଭାରତର କୌଣସି ଅଞ୍ଚଳରେ ବନ୍ୟା ବା ଅନାବୃଷ୍ଟି ଯୋଗୁଁ ଦୁର୍ଭିକ୍ଷ ପଡ଼ିଲେ ସେ ବୋମ୍ବେଇ ପ୍ରଦେଶରୁ ଚାନ୍ଦା ସଂଗ୍ରହ କରି ସେହି ଦୁର୍ଭିକ୍ଷ ପ୍ରପୀଡିତ ଅଞ୍ଚଳକୁ ସାହାଯ୍ୟ ପଠାଉ ଥିଲେ । ଓଡ଼ିଶାର ପୁରୀ ଜିଲ୍ଲାରେ ୧୯୨୦ ସାଲରେ ଦୁର୍ଭିକ୍ଷ ପଡ଼ିଥିଲା । ସେତେବେଳେ ଦୀନବନ୍ଧୁ-ଗୋପବନ୍ଧୁ ବିହାର ଓ ଓଡ଼ିଶାର ଲେଫ୍ଟେନାଣ୍ଟଙ୍କ ଶାସନ-ସଭାର ସଭ୍ୟ ଥିଲେ । ସେଠାରେ ସେ ପୁରୀ ଜିଲାର ଦୁର୍ଭିକ୍ଷ ସମ୍ବନ୍ଧରେ ସରକାରଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । କିନ୍ତୁ ଓଡ଼ିଶାର କମିଶନର ସାହେବ ପୁରୀ ଜିଲାରେ ଦୁର୍ଭିକ୍ଷ ପଡ଼ି ନାହିଁ ବୋଲି ରିପୋର୍ଟ କରିଥିବାରୁ ଦୀନବନ୍ଧୁ-ଗୋପବନ୍ଧୁଙ୍କ କଥା ସରକାର ବିଶ୍ୱାସ କଲେ ନାହିଁ । ସେତେବେଳେ ପୁରୀରେ ଲେଫ୍ଟେନାଣ୍ଟଙ୍କର ସ୍ୱାସ୍ଥ୍ୟ-ନିବାସ ଥିଲା । ସେଠାକୁ ଲେଫ୍ଟେନାଣ୍ଟ ଗଲାବେଳେ ଦୀନବନ୍ଧୁ-ଗୋପବନ୍ଧୁ ତାହାଙ୍କୁ ଦୁର୍ଭିକ୍ଷ-ପୀଡିତ ଜନସାଧାରଣଙ୍କ କରୁଣ ଶବ ଦେଖାଇ ଦେଇଥିଲେ । ଲେଫ୍ଟେନାଣ୍ଟ ବାଧ୍ୟ ହୋଇ ପୁରୀର ଦୁର୍ଭିକ୍ଷ-ପୀଡ଼ା ସ୍ୱୀକାର କରିଥିଲେ । କିନ୍ତୁ ସରକାରଙ୍କ ତରଫରୁ କୌଣସିପ୍ରକାର ସାହାଯ୍ୟର ବ୍ୟବସ୍ଥା କରି ନ ଥିଲେ । ଦୀନବନ୍ଧୁ-ଗୋପବନ୍ଧୁ ଅଗତ୍ୟା ଭିକ୍ଷା-ଥାଳ ନେଇ ବୁଲିଥିଲେ । ଓଡ଼ିଶାର ଦୁର୍ଦ୍ଦଶା କ୍ରମଶଃ ମହାତ୍ମାଜୀଙ୍କ କର୍ଣ୍ଣଗୋଚର ହୋଇଥିଲା । ସେ ସେତେବେଳେ ଠକ୍କରଙ୍କୁ ପଠାଇ ଯଥାସାଧ୍ୟ ସାହାଯ୍ୟ କରିଥିଲେ । ଏହିପରି ବିଭିନ୍ନ ସାଧୁକର୍ମ କରି ମହାତ୍ମାଜୀ ଜନପ୍ରିୟ ହୋଇଥିଲେ । ନିଜର ଜନପ୍ରିୟତା ସମ୍ବନ୍ଧରେ ଯେତେବେଳେ ଆତ୍ମବିଶ୍ୱାସ ଜନ୍ମିଲା ସେତେବେଳେ ସେ ନିଜ ଅବିଷ୍କୃତ ଅସହଯୋଗ ଆନ୍ଦୋଳନର ପନ୍ଥା କଂଗ୍ରେସ ବୈଠକରେ ପ୍ରସ୍ତାବ କରିବାକୁ ସାହସୀ ହେଲେ ।

୧୯୨୦ ସାଲର ଡିସେମ୍ବର ମାସର ନାଗପୁର ବୈଠକରେ ମହାତ୍ମାଙ୍କ ଅସହଯୋଗ ପ୍ରସ୍ତାବ ଗୃହୀତ ହୋଇଥିଲା । ଏହି ସମୟରୁ ତାହାଙ୍କୁ ଭାରତବାସୀମାନେ 'ମହାତ୍ମାଜୀ' ଆଖ୍ୟା ଦେଇଥିଲେ । କିନ୍ତୁ ପ୍ରକୃତରେ କହିବାକୁ ଗଲେ ତାହାଙ୍କଠାରେ ଥିବା ମହାପୁରୁଷର ଗୁଣମାନ ଦକ୍ଷିଣ ଆଫ୍ରିକାରେ ପ୍ରକାଶିତ ହୋଇ ପଡ଼ିଥିଲା । ଅଜ୍ଞ ଭାରତ ତାହା ଚିହ୍ନିପାରି ନ ଥିଲା । ୧୯୨୧ ସାଲରୁ ଭାରତର ପରାଧୀନ ଜନତା ଯେତେବେଳେ ତାହାଙ୍କ ଅଙ୍ଗୁଳି-ସଙ୍କେତରେ ପରିଚାଳିତ ହେଲେ ସେତେବେଳେ ସେ ଭାରତର ମୁକୁଟବିହୀନ ସମ୍ରାଟ ବା ଈଶ୍ୱରଙ୍କ ଅବତାର କହିବାକୁ ହେବ । କେବଳ ଭାରତବାସୀ ନୁହନ୍ତି । ଅସହଯୋଗ-ଆନ୍ଦୋଳନର ଆରମ୍ଭ ଠାରୁ ପୃଥିବୀର ଅନ୍ୟାନ୍ୟ ମହାଦେଶରେ ଅଧିବାସୀଙ୍କ ଦୃଷ୍ଟି ମଧ୍ୟ ଏହି ଅବତାର-ପୁରୁଷଙ୍କ ଉପରେ ପଡିଥିଲା ।

ଦୀନବନ୍ଧୁ-ଦେଶବନ୍ଧୁଙ୍କ ଦରିଦ୍ର-ନାରାୟଣ ସେବା ଓଡ଼ିଶାବାସୀ ପାଶୋରି ନାହାନ୍ତି । ଯେତେବେଳେ ପାଶୋରିବେ ସେତେବେଳେ ଓଡ଼ିଆ ଜାତିର ମୃତ୍ୟୁ ଘଟିବ । ଓଡ଼ିଶାର ଏହି ମହାପୁରୁଷ ନାଗପୁର କଂଗ୍ରେସ ବୈଠକରୁ ଅସହଯୋଗ-ଆନ୍ଦୋଳନର ସୋତରେ ଗୋଟିଏ ଧୋଖାକୁ ଓଡ଼ିଶାକୁ ଅଣିଥିଲେ । ଏଣୁ ସେ ଉତ୍କଳର ଭଗୀରଥ, ମହାତ୍ମା ଓ ଅବତାର ପୁରୁଷ ।

ଅସହଯୋଗ-ଆନ୍ଦୋଳନରେ କଂଗ୍ରେସର ରୂପ ବଦଳି ଗଲା । ବିଦ୍ୟାଳୟ ଛାଡିବା ପାଇଁ ଛାତ୍ରମାନଙ୍କୁ, ଓକିଲାତି ଛାଡିବା ପାଇଁ ଓକିଲମାନଙ୍କୁ ଓ ଚାକିରୀ ଛାଡ଼ିବା ପାଇଁ ସରକାରୀ କର୍ମଚାରୀମାନଙ୍କୁ କୁହାଗଲା । ହଜାର ହଜାର ଲୋକ ଆପଣା ଆପଣା ବ୍ୟବସାୟ ଛାଡ଼ି କଂଗ୍ରେସ ନୀତି ମାନି ଦେଶସେବା କରିବାକୁ ଅଣ୍ଟା ଭିଡ଼ି

ଲଗିଲେ । ଥାନା, ଜିଲ୍ଲା ଓ ପ୍ରାଦେଶିକ କଂଗ୍ରେସ କମିଟିମାନ ଗଢ଼ା ହେଲା । ସୂତାକଟା ଓ ଦରିଦ୍ର ସେବା ଏହି କମିଟିର ସଭ୍ୟମାନଙ୍କର ପ୍ରଧାନ କର୍ତ୍ତବ୍ୟ ବୋଲି ନିର୍ଦ୍ଧାରିତ ହୋଇଥିଲା । କଂଗ୍ରେସ ସହିତ ଜନଗଣଙ୍କର ଏହିପରି ସାକ୍ଷାତ ସମ୍ବନ୍ଧ ସ୍ଥାପିତ ହେଲା । ମହାତ୍ମାଜୀ ଭାରତର ପ୍ରତ୍ୟେକ ପ୍ରଦେଶର ଜିଲା, ଥାନା ଓ ଗ୍ରାମମାନ ବୁଲି ଲୋକଙ୍କ ଅବସ୍ଥା ସ୍ୱଚକ୍ଷୁରେ ଦେଖି ବୁଝିବାର ସୁଯୋଗ ପାଇଲେ । ୧୯୨୧ ସାଲର ମାର୍ଚ୍ଚ ମାସରେ ତାହାଙ୍କର ଉତ୍କଳ-ଲୀଳା ଆରମ୍ଭ ହୋଇଥିଲା । ସେ ଭଦ୍ରକ, କଟକ, ପୁରୀ ଓ ବ୍ରହ୍ମପୁର ବୁଲି ଥିଲେ । ସବୁଠାରେ ସଭା ହୋଇଥିଲା ଓ ତାହାଙ୍କ ବକ୍ତୃତାର ସୁମଧୁର ବଂଶୀ-ଧ୍ୱନୀ ବାଜି ଉଠିଥିଲା । ଇଂରେଜୀ ପାଠ ଛାଡ଼ିବା ପାଇଁ ସେ ସେଉଁ ଉପଦେଶ ଦେଉଥିଲେ ଅନେକ ଲୋକ ସେତେବେଳେ ପ୍ରତ୍ୟେକ ପ୍ରଦେଶରେ ତାହାର ତୀବ୍ର ସମାଲୋଚନା କରୁଥିଲେ । ଇଂରେଜୀ ପାଠ ପଢ଼ି ତିଲକ, ରାମମୋହନ ରାୟ ଓ ସ୍ୱୟଂ ମହାତ୍ମାଜୀଙ୍କ ପରି ଲୋକ ଯହିଁ ଗଢ଼ି ଉଠନ୍ତି ତେବେ ସେ ପାଠକୁ ମନ୍ଦ ବୋଲି ବିବେଚନା କରିବାର କାରଣ କଅଣ ? ଏହାର ଉତ୍ତର ମହାତ୍ମାଜୀ ଖବର-କାଗଜରେ ପ୍ରକାଶ କରିଥିଲେ ମଧ୍ୟ କଟକର ସଭାରେ ତାହାଙ୍କୁ ପଚରା ଯାଇଥିଲା । ଏଥିରୁ ଜଣାଯାଏ ଯେ ପ୍ରଶ୍ନକାରକ ନିୟମିତରୂପେ ଖବରକାଗଜ ପଢୁ ନ ଥିଲେ । କେବଳ ନିଜର ଅହଙ୍କାର ଯୋଗୁଁ ପ୍ରଶ୍ନ କରୁଥିଲେ । ବିଶେଷତଃ ସେ ବୁଝି ନ ଥିଲେ ଯେ, ଅବତାର-ପୁରୁଷଙ୍କ ପ୍ରତି ଶ୍ରଦ୍ଧା ଓ ଭକ୍ତି ଦେଖାଇ ତାହାଙ୍କ ଉପଦେଶ ଅନୁସରଣ ନ କଲେ ତାହାଙ୍କୁ ବୁଝିବା ଦୁରୁହ । ଶ୍ରଦ୍ଧା ଓ ଭକ୍ତି ହରାଇ ଭାରତର ଆଜି ଏ ଦୁର୍ଦ୍ଦଶା । ଶ୍ରଦ୍ଧା ଓ ଭକ୍ତିର ଅଭାବ ସମ୍ବନ୍ଧରେ ଉତ୍କଳରେ ଯଥେଷ୍ଟ ପ୍ରମାଣ ଅଛି । ସାଧାରଣତଃ ଉତ୍କଳର ଅଲେଖ ଧର୍ମ ପ୍ରତି ଅନେକଙ୍କର ହୃଦୟରେ ଭକ୍ତିଭାବ ଅଛି ।

କିନ୍ତୁ ଶ୍ରଦ୍ଧାର ସହିତ ସେ ଧର୍ମର ତତ୍ତ୍ୱ ଜାଣିବା ପାଇଁ ସେ ଇଚ୍ଛା କରିବ ସେ ତାହାର ଗଭୀରତା ବୁଝି ଅବାକ୍ ହେବ । ସେ ଧର୍ମଟି ବେଦର କୁମାରଙ୍କ ପ୍ରବର୍ତ୍ତିତ ଧର୍ମ । ସେହି କୁମାରଙ୍କୁ କାର୍ତ୍ତିକେୟ ରୂପେ ପୂଜା କରି ତାହାଙ୍କ ମତକୁ ଘୃଣା କରିବା ଅଜ୍ଞତା ଯୋଗୁଁ ଘଟୁଅଛି । ଅଜ୍ଞତା ଯୋଗୁଁ ଘୃଣା ଜାତ ହେଉଥିବାରୁ ହିନ୍ଦୁ ଶାସ୍ତ୍ରମାନଙ୍କରେ ଶ୍ରଦ୍ଧା ଓ ଭକ୍ତିକୁ ମାନବିକତାର ବିକାଶରେ ପ୍ରଥମ ସ୍ଥାନ ଦିଆ ଯାଉଅଛି । ପୁସ୍ତକଗତ ଜ୍ଞାନ ଯଥାର୍ଥ ଜ୍ଞାନ ନୁହେଁ । ଅନୁଭବସିଦ୍ଧ ଜ୍ଞାନ ଯଥାର୍ଥ ଜ୍ଞାନ । ଏଣୁ କେବଳ ଯୁକ୍ତିରେ ଯଥାର୍ଥ ଜ୍ଞାନ ଜନ୍ମି ନ ପାରେ । ଯେଉଁମାନେ ଅନୁଭବରେ ଜ୍ଞାନ ଅର୍ଜ୍ଜନ କରିବାର ଉପାୟ ଜାଣି ନ ଥିଲେ ସେମାନେ ମହାତ୍ମାଜୀଙ୍କୁ ସମାଲୋଚନା କରିବା ବିଚିତ୍ର କଥା ନୁହେ । ଶ୍ରଦ୍ଧା ଓ ଭକ୍ତି ମନୁଷ୍ୟକୁ ଈଶ୍ୱରଙ୍କ ସ୍ତରକୁ ଉଠାଇ ଦିଏ । ତାହାରି ବଳରେ ଗାନ୍ଧୀ ଅବତାର-ପୁରୁଷ ହୋଇ ପାରିଥିଲେ ।

୧୯୨୧ ସାଲରେ ଭାରତ ଭ୍ରମଣ କରିବା ପାଇଁ ବିଲାତରୁ ଯୁବରାଜ ଆସିଲେ । ସେତେବେଳକୁ କଂଗ୍ରେସର କାର୍ଯ୍ୟ ପ୍ରବଳ ଭାବରେ ଚାଲିଥାଏ । ଅଲି ଭାଇମାନେ ଜେଲଖାନାରୁ ଫେରି କଂଗ୍ରେସରେ ମିଶି ଥାଆନ୍ତି । ହିନ୍ଦୁ ଓ ମୁସଲମାନ ମଧ୍ୟରେ ଏକତା ଥାଏ । ସରକାର ଯୁବରାଜଙ୍କ ପାଇଁ ନାନା ଉତ୍ସବର ଅନୁଷ୍ଠାନ କରୁ ଥାଆନ୍ତି । ସେହି ସବୁ ଉତ୍ସବ ବାସନ୍ଦ କରିବା ପାଇଁ କଂଗ୍ରେସ ଜନସାଧାରଣଙ୍କୁ ଉପଦେଶ ଦେଉଥିଲା । ଯେଉଁଦିନ ଯେଉଁ ସହରକୁ ଯୁବରାଜ ଯିବେ ସେ ଦିନ ସେଠାରେ ଦୋକାନ ପ୍ରଭୃତି ବନ୍ଦ ରଖି ଲୋକେ ହରତାଳ ପାଳିବେ । କାରଣ, ଯୁବରାଜ ପଲ୍ଲୀବାସୀଙ୍କ ଦୁର୍ଦ୍ଦଶା ନ ଦେଖି ସହରର ଶୋଭା ଦେଖି ଦେଶକୁ

ଯାଇ ଭାରତର ସୁଖ ସ୍ୱାଚ୍ଛନ୍ଦ୍ୟ ଗାଇ ବସିବେ । ଯୁବରାଜଙ୍କୁ ଏପରି ବାସନା କରିବା ସରକାର ସହିବେ କାହିଁକି ? କଂଗ୍ରେସ କଥା ମାନି ଯଦି ଲୋକେ ଚାଲିବେ ତେବେ ସରକାରଙ୍କ କ୍ଷମତା ଲୋପ ପାଇଲା ବୋଲି ଲୋକେ ମନେ କରିବେ । ଏଣୁ ବଙ୍ଗଲାଟ ଲର୍ଡ଼ ରିଡଙ୍ଗ ଯୁବରାଜଙ୍କ ଉତ୍ସବ-ବାସନା ପ୍ରଚାର କରିବା ସ୍ୱେଚ୍ଛାସେବକମାନଙ୍କୁ ବେ-ଆଇନ ବୋଲି ଘୋଷଣା କଲେ । ସେତେବେଳେ ସାଧାରଣ ସ୍ୱେଚ୍ଛାସେବକମାନେ ଠିକଏ ଦବି ଯାଇଥିଲେ । କିନ୍ତୁ ଦେଶବନ୍ଧୁ ଚିତ୍ତରଞ୍ଜନ ପ୍ରଭୃତି ନେତାମାନଙ୍କ ପତ୍ନୀ ଓ ଭଉଣୀ ପ୍ରଭୃତି ମହିଳାମାନେ ଯେତେବେଳେ ଯୁବରାଜଙ୍କ ଉତ୍ସବ ବାସନା କରିବା ପାଇଁ ପ୍ରଚାର କଲେ ଓ କାରାଦଣ୍ଡ ବରଣ କଲେ ସେତେବେଳେ ଦେଶରେ ଜାଗରଣ ତେଜି ଉଠିଲା । ମହିଳାମାନେ ଅଳ୍ପଦିନେ ମୁକ୍ତ ପାଇଲେ । ମାତ୍ର ଜାଗରଣର ହ୍ରାସ ଘଟିଲା ନାହିଁ । ଲକ୍ଷ ଲକ୍ଷ ଲୋକ କାରା ଗୃହ ବରଣ କଲେ । ସରକାର ବାଛି ବାଛି କଂଗ୍ରେସକୁ ଜୀବନ ସର୍ବସ୍ୱ କରିଥିବା ବ୍ୟକ୍ତିମାନଙ୍କୁ କାରା-ଗୃହରେ ରଖି ଅନ୍ୟମାନଙ୍କ ଛାଡ଼ି ଦେଉଥିଲେ । କଲିକତାକୁ ଯୁବରାଜ ଆସିଥିଲେ—ସେଠାରେ ପୂର୍ଣ୍ଣମାତ୍ରାରେ ଲୋକେ ହରତାଳ ପାଳିଥିଲେ । 'ଇଂଲିଶ୍‌ମ୍ୟାନ୍' ନାମକ ସାହେବୀ ଖବର-କାଗଜର ସମ୍ପାଦକ ସେ ଦିନର ହରତାଳ ଦେଖି ସ୍ତମ୍ଭିତ ହୋଇଥିଲେ । ଗୋଟିଏ ବଡ଼ ବଙ୍ଗାଳୀ ପିଲା ଦୋକାନ ବନ୍ଦ କରି ଦୋକାନ-ମୁହଁରେ ବସିଥିଲା । ଉକ୍ତ ଖବର-କାଗଜର ପ୍ରତିନିଧି ଯାଇ ଟଙ୍କାକୁ ଗୋଟିଏ ବିଡ଼ି କିଣିବେ କହି ତାହାକୁ ବିଡ଼ିଟିଏ ମାଗିଥିଲେ । ପିଲାଟି ଉତ୍ତର ଦେଇଥିଲା "ଟଙ୍କେ ଛାଡ଼ି ଶହେ ଟଙ୍କା ଦେଲେ ମଧ୍ୟ ବିଡ଼ିଟିଏ ଦେବି ନାହିଁ ।" କହିବା ବାହୁଲ୍ୟ ଯେ, ମହାତ୍ମାଜୀ ପିଲାଟିର ହୃଦୟକୁ ଅଧିକାର କରିଥିବାରୁ ସେ ଏପରି କହି ପାରିଥିଲା ।

ଅସହଯୋଗ-ଅାନ୍ଦୋଳନରେ ଜନସାଧାରଣଙ୍କ ଉତ୍ତେଜିତ ହୋଇ ଉଚ୍ଛୃଙ୍ଖଳ ହୋଇ ପଡ଼ିବାର ସମ୍ଭାବନା ସର୍ବଦା ଥାଏ । କାରଣ, ଅହିଂସା ଆନ୍ଦୋଳନର ଶକ୍ତି କଳିବା ସାଧାରଣ ମନୁଷ୍ୟର ଅପରାରେ ନାହିଁ । ଏହି ହେତୁରୁ ୧୯୨୧ ସାଲର ନଭେମ୍ବର ମାସରେ ବୋମ୍ବେଇର ଉତ୍ତେଜିତ ଜନତା ଟ୍ରାମ-ଗାଡ଼ି ପ୍ରଭୃତି ପୋଡ଼ି ଶାନ୍ତିଭଙ୍ଗ କରିଥିଲେ । ଏଣୁ ସେ ମାସ ୯ ତାରିଖରେ ମହାତ୍ମାଜୀ ଅନଶନ ଆରମ୍ଭ କରି ୧୬ ତାରିଖରେ ତାହା ଭଙ୍ଗ କରିଥିଲେ । ତତ୍ପରେ ୧୯୨୨ ସାଲର ପ୍ରାରମ୍ଭରେ ନିଜ ନେତୃତ୍ୱରେ ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରେ ଆଇନ ଅମାନ୍ୟ କରିବା ଆନ୍ଦୋଳନ ଆରମ୍ଭ କରୁଥିଲେ । କିନ୍ତୁ ଫେବ୍ରୁଆରି ମାସରେ ଚୌରିଚୌରାରେ ଉତ୍ତେଜିତ ଜନତା ଶାନ୍ତିଭଙ୍ଗ କରିବାରୁ ଆନ୍ଦୋଳନ ପ୍ରତ୍ୟାହାର କରିବାକୁ ସେ ବାଧ୍ୟ ହୋଇଥିଲେ । ସେତେବେଳକୁ ସବୁ ପ୍ରଦେଶର କଂଗ୍ରେସ-ନେତାମାନେ ପ୍ରାୟ ବନ୍ଦୀ ହୋଇ ସାରିଲେଣି । ଲୋକଙ୍କର ଭୟ ଛାଡ଼ି ଗଲାଣି । କିନ୍ତୁ ନିରୁପଦ୍ରବ ଆନ୍ଦୋଳନର ମୂଲ୍ୟ ଲୋକେ ବୁଝି ନ ଥିଲେ । ନିରୁପଦ୍ରବତାକୁ ଲକ୍ଷ୍ୟ ରଖି ଶାନ୍ତିଭଙ୍ଗବେଳେ ଆନ୍ଦୋଳନକୁ ବନ୍ଦ ନ ରଖୁଥିଲେ ଦେଶରେ ଅରାଜକତାର ଆଶଙ୍କା ଥିଲା । ଅରାଜକତା ଉପସ୍ଥିତ ହେଲେ ସରକାର କାରାଦଣ୍ଡ ପରିବର୍ତ୍ତିରେ ପ୍ରାଣଦଣ୍ଡ ଦେଲେ କେହି ସରକାରଙ୍କ ନିନ୍ଦା କରନ୍ତେ ନାହିଁ । ପ୍ରାଣଦଣ୍ଡକୁ ବରଣ କରିବା ପାଇଁ ଅପରାଧ ଅର୍ଜିବା ପ୍ରଶଂସନୀୟ ନୁହେ । ସାଧୁକର୍ମ କରୁ କରୁ ପ୍ରାଣହାନି ଘଟିଲେ ଦୁଃଖର କଥା ନୁହେ ।

ମହାତ୍ମାଜୀ ଆଇନ-ଅମାନ୍ୟ ବନ୍ଦ ରଖିଲେ ମଧ୍ୟ ଅମଲାତନ୍ତ୍ର ସରକାର ତାହାଙ୍କୁ ୧୦ ତାରିଖ ମାର୍ଚ୍ଚ ମାସରେ ଗିରଫ କରି

୮ ତାରିଖରେ ୬ ବର୍ଷ କାରାଦଣ୍ଡର ଆଦେଶ ଦେଲେ । ତାହାଙ୍କର କାରାଦଣ୍ଡ ଭୋଗର ଅଳ୍ପକାଳ ପରେ ଅନ୍ୟାନ୍ୟ ନେତାମାନେ କାରାମୁକ୍ତ ହୋଇଥିଲେ । ସେମାନଙ୍କ ମଧ୍ୟରୁ ଦେଶବନ୍ଧୁ ଚିତ୍ତରଞ୍ଜନ କଂଗ୍ରେସର ବୈଠକ ଗୟାରେ ବସିବା ବର୍ଷ (୧୯୨୨) କଂଗ୍ରେସର ନୂତନ କାର୍ଯ୍ୟ-ପନ୍ଥା ଗଢ଼ିଥିଲେ । ଅସହଯୋଗ ଆନ୍ଦୋଳନର ପୂର୍ବରୁ କଂଗ୍ରେସର ଦାବୀ ଶୁଣି ଭିକ୍ଷା-ଥାଳରେ ମୁଷ୍ଟି ଭିକ୍ଷା ଦେଲାଭଳି ଯେଉଁ ଶାସନ-ସଂସ୍କାର ଦେଇଥିଲେ ତାହା ଗ୍ରହଣୀୟ ନୁହେଁ ବୋଲି ପ୍ରଥମେ ଦେଶବନ୍ଧୁ କହିଥିଲେ । ସେହି ଶାସନ-ସଂସ୍କାର ଅନୁସାରେ ଭାରତର କେନ୍ଦ୍ର ଓ ପ୍ରାଦେଶିକ ଶାସନ-ପରିଷଦମାନ ଗଢ଼ା ହୋଇଥିଲା । ତହିଁରେ ନରମଦଳର ଲୋକେ ସଭ୍ୟ ଥିଲେ । କଂଗ୍ରେସ ନେତାମାନେ ଏହି ଶାସନ-ପରିଷଦର ସଭ୍ୟ ହୋଇ ସରକାରଙ୍କୁ କପରି ପ୍ରତିରୋଧ କରିବେ ତାହାର କାର୍ଯ୍ୟ-ପନ୍ଥା ଚିତ୍ତରଞ୍ଜନ ଓ ମୋତିଲାଲ ନିର୍ଦ୍ଦେଶ କରିଥିଲେ । ଦେଶବନ୍ଧୁ ସଭାପତି ହୋଇଥିଲେ ମଧ୍ୟ ଗୟା କଂଗ୍ରେସରେ ମତଭେଦର ସୃଷ୍ଟି ଘଟିଥିଲା । ଏଣୁ ଦେଶବନ୍ଧୁ ସ୍ୱରାଜ ଦଳ ଗଢ଼ିଥିଲେ । ଅନେକ କଂଗ୍ରେସ କର୍ମୀ ସ୍ୱରାଜ ଦଳରେ ମିଶି ଶାସନ-ପରିଷଦର ସଭ୍ୟ ହୋଇଥିଲେ । ସେହି ଅବସରରେ ଓଡ଼ିଶାର ଯୋଗ୍ୟ ସନ୍ତାନ ପଣ୍ଡିତ ନୀଳକଣ୍ଠ ଦାଶ କେନ୍ଦ୍ର-ପରିଷଦର ସଭ୍ୟ ହୋଇଥିଲେ । କଂଗ୍ରେସର ଏହି ଦଳଭେଦ ଥିବାବେଳେ ୧୯୨୪ ସାଲର ଫେବୃଆରୀ ମାସରେ ଅବତାର ପୁରୁଷ କାରାମୁକ୍ତ ହେଲେ । ମନୋଗୁରଣରେ ଅଦ୍ଭୁତ ଘଟନା ଘଟିବା ଭଳି ତାହାଙ୍କର ପଦେ କଥାରେ କଂଗ୍ରେସର ଦଳଭେଦ ଲୋପ ପାଇଥିଲା । ସେ କହିଥିଲେ—"କଂଗ୍ରେସର ଅନ୍ୟ କାର୍ଯ୍ୟକାରୀ ନୀତି ନ ଥିବା ବେଳେ ଶାସନ-ପରିଷଦରେ ସରକାରଙ୍କୁ ପ୍ରତିରୋଧ କରିବା ମନ୍ଦ ହୋଇ ନାହିଁ ।"

୧୯୨୪ ସାଲରେ ମହାତ୍ମାଜୀ ବେଲଗାଁଠାରେ ବସିଥିବା କଂଗ୍ରେସର ଅଧିବେଶନରେ ସଭାପତି ହୋଇଥିଲେ । ଏହାପରେ ସେ କଂଗ୍ରେସରୁ ଅବସର ଗ୍ରହଣ କରି ଚରଖା-ପ୍ରଚାରରେ ବ୍ରତୀ ହୋଇଥିଲେ ଓ ନିଖିଳ ଚରଖା-ସଂଘ ଗଠନ କରୁଥିଲେ । କର୍ମରେ ବ୍ୟାପୃତ ନ ରହିଲେ ଚିତ୍ତର ସ୍ଥିରତା ଜନ୍ମେ ନାହିଁ । ଚିତ୍ତ ସ୍ଥିର ନୋହିଲେ ଆତ୍ମ-ସଂଯମ ଜନ୍ମିବା ଅସମ୍ଭବ । ଏଣୁ ସେ ସୂତାକଟା ପ୍ରତି ସମସ୍ତଙ୍କର ଚିତ୍ତ ଆକର୍ଷଣ କରୁଥିଲେ । ଯେଉଁମାନେ ସୂତାକଟାରେ ଅଭ୍ୟସ୍ତ, ସୂତାକଟାରେ କିପରି ଚିତ୍ତଶୁଦ୍ଧି ଜନ୍ମେ ତାହା ସେମାନେ ଜାଣନ୍ତି । କଥାରେ ବୁଝାଇଲେ କେହି ସୂତାକଟାର ଉପକାରିତା ବୁଝିବେ ନାହିଁ ।

୧୯୨୫ ସାଲର ଜୁନ୍ ମାସରେ ଦେଶବନ୍ଧୁଙ୍କର ପରଲୋକ ହେଲା । ମହାତ୍ମାଜୀ ସେତେବେଳେ କଲିକତାରେ ଥିଲେ । ନିଜ କାନ୍ଧରେ ଦେଶବନ୍ଧୁଙ୍କର ମୃତ ପିଣ୍ଡକୁ ବହନ କରିଥିଲେ । ତାହାଙ୍କ ସ୍ମୃତିରକ୍ଷା ପାଇଁ ଦଶ-ଲକ୍ଷ ଟଙ୍କା ଚାନ୍ଦା ଉଠାଇଥିଲେ । ଅଗଷ୍ଟ ମାସରେ କଂଗ୍ରେସର ସଭାପତି ପଦ ଛାଡ଼ିଦେବା ପାଇଁ ମନସ୍ଥ କରି ତାହା ମୋତିଲାଲ ନେହେରୁଙ୍କୁ ଯାଚି ଥିଲେ । ସେ ଲେଖିଥିଲେ, "ଭାରତର ଶିକ୍ଷିତ ଲୋକେ ଏବେ କଂଗ୍ରେସ ଚଳାନ୍ତୁ । ମୁଁ ତାଙ୍କୁ ବାଧା ଦେବି ନାହିଁ । ମୁଁ ସାଧାରଣ ଲୋକଙ୍କ ଭାଗ୍ୟରେ ଆପଣା ଭାଗ୍ୟ ମିଶାଇ ଦେଇଅଛି ଇତ୍ୟାଦି ।" ଯେଉଁମାନେ ଦେଶ-ଲୋକଙ୍କ କୌଣସି ହିତ ନ କରି ଆରାମଚୌକିରେ ବସି ରାଜନୀତି ଚର୍ଚ୍ଚା କରୁଥିଲେ ସେମାନଙ୍କୁ ମହାତ୍ମାଜୀ ଙ୍କ ମଧୁର ଭାଷାରେ ଚେତାଇ ଥିଲେ ତାହା ବିଚାର କରିବା ଉଚିତ । ୧୯୨୫ ରୁ ୧୯୨୯ ସାଲ ମଧ୍ୟରେ ସେ ଗଠନମୂଳକ କାର୍ଯ୍ୟରେ ଆତ୍ମନିୟୋଗ କରିଥିଲେ ।

୧୯୨୮ ସାଲରେ କଲିକତାଠାରେ କଂଗ୍ରେସର ଅଧିବେଶନରେ ସେ ଏହି ମର୍ମରେ ପ୍ରସ୍ତାବ ଆଗତ କରିଥିଲେ ଯେ ବର୍ଷକ ମଧ୍ୟରେ ବ୍ରିଟିଶ୍ ସରକାର ଯଦି ନେହେରୁ କମିଟିର ଶାସନ-ତନ୍ତ୍ର ଗ୍ରହଣ ନ କରନ୍ତି ତେବେ କଂଗ୍ରେସ ପୂର୍ଣ୍ଣ ସ୍ୱାଧୀନତା ପାଇଁ ଆଇନ ଅମାନ୍ୟ ଆନ୍ଦୋଳନ ଆରମ୍ଭ କରିବ । ଶାସନ ଚଳାଇବା ପାଇଁ ଭାରତବାସୀ ଅଯୋଗ୍ୟ ବୋଲି ସରକାର ପ୍ରଚାର କରୁଥିବାରୁ ମୋତିଲାଲ ନେହେରୁଙ୍କ ସଭାପତିତ୍ୱରେ କଂଗ୍ରେସ ତରଫରୁ ଗୋଟିଏ କମିଟି ଗଢ଼ା ହୋଇଥିଲା । ସେହି କମିଟି ଗୋଟିଏ ଶାସନ ଖସଡ଼ା ତିଆରି କରିଥିଲେ । ସେହି ଖସଡ଼ା ଅନୁସାରେ ଶାସନ-ସଂସ୍କାର କରିବା ପାଇଁ ବ୍ରିଟିଶ ସରକାରଙ୍କର ଆଗ୍ରହ ଦେଖା ନ ଯିବାରୁ କଂଗ୍ରେସ ପୂର୍ଣ୍ଣ ସ୍ୱାଧୀନତା ଦାବି କଲା । ଏହାପରେ ବ୍ରିଟିଶ ସରକାରଙ୍କର ମନୋଭାବ ଭାରତ ପ୍ରତି ଯେତିକି ଦାରୁଣ ହୋଇଥାଏ କଂଗ୍ରେସର ଦାବି ସେତିକି ବଢ଼ୁଥାଏ ଓ ପ୍ରତିଜ୍ଞା ଦୃଢ଼ତର ହୋଇଥାଏ ।

ଦେଶରେ ଯାହାର ଖ୍ୟାତି ବଢ଼େ ତାହାଠାରେ କୌଣସି ନା କୌଣସି ସଦ୍‌ଗୁଣ ଥାଏ । ମହୁମାଛି ଫୁଲରୁ ମହୁ ସଂଗ୍ରହ କଲା-ଭଳି ଯେ ଖ୍ୟାତନାମା ବ୍ୟକ୍ତିର ସାଧୁ ଗୁଣକୁ ଚିହ୍ନି ତାହାକୁ ଗ୍ରହଣ କରିବାରେ ସମର୍ଥ ହୁଏ ତାହାଠାରେ ଈଶ୍ୱରଙ୍କ ଅବତାର ସମ୍ଭବପର ହୁଏ । ଦୀନବନ୍ଧୁ ଗୋପବନ୍ଧୁ ଦରିଦ୍ର ନାରାୟଣ ସେବାରେ ବାଲ୍ୟ-କାଳରୁ ଜୀବନ ଉତ୍ସର୍ଗ କରିଥିଲେ । ଭାରତର ପ୍ରାଚୀନ ବ୍ରହ୍ମଚର୍ଯ୍ୟାଶ୍ରମର ଆଦର୍ଶରେ ଏ ଦେଶରେ ଶିକ୍ଷା-ବିସ୍ତାରର ପ୍ରୟୋଜନୀୟତା ବୁଝିପାରି ସେ ସତ୍ୟବାଦୀଠାରେ ଉଚ୍ଚ ଇଂରାଜୀ ବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ । ମହାତ୍ମାଜୀଙ୍କ ମନ୍ତ୍ରରେ ଦୀକ୍ଷିତ ହେବା ସଙ୍ଗେ ସଙ୍ଗେ ଉଚ୍ଚ ଇଂରାଜୀ ବିଦ୍ୟାଳୟକୁ ସେ ଜାତୀୟ ବିଦ୍ୟାଳୟରେ ପରିଣତ କରିଥିଲେ ।

ମହାତ୍ମାଜୀ ଯେଉଁବେଳେ ସତ୍ୟବାଦୀରେ ପଦାର୍ପଣ କରିଥିଲେ, ସେତେବେଳେ ଦୀନବନ୍ଧୁ ଗୋପବନ୍ଧୁଙ୍କ ନିଷ୍ଠାପର ଦେଶ ସେବାରେ ମୁଗ୍ଧ ହୋଇ ଯାଇଥିଲେ । ୧୯୨୮ ସାଲର ଜୁନମାସର ୧୭ ତାରିଖରେ ଗୋପବନ୍ଧୁଙ୍କର ପରଲୋକ ହେଲା । ସେତେବେଳେ 'ଇୟଙ୍ଗ ଇଣ୍ଡିଆ' କାଗଜରେ ମହାତ୍ମାଜୀ ଦୀନବନ୍ଧୁ ଗୋପବନ୍ଧୁଙ୍କର ବହୁତ ଗୁଣ ଗାନ କରିଥିଲେ । ତାହା ତାହାଙ୍କ ପକ୍ଷରେ ସାଧାରଣ ମନୁଷ୍ୟର ସ୍ୱଭାବ ପରି । କିନ୍ତୁ ଓଡ଼ିଶା-ଜାଗରଣର ଆଦି ପିତା ମଧୁସୂଦନଙ୍କ ଜୋତା କାରଖାନା ଦେଖି ତାହାଙ୍କୁ ଭୂୟସୀ ପ୍ରଶଂସା କରିବାରେ ତାହାଙ୍କ ମହାନୁଭବତା ସ୍ପଷ୍ଟରୂପେ ପ୍ରକଟିତ ହୁଏ । ଓଡ଼ିଶାର ଆଦି ଜନ-ନେତା ମଧୁସୂଦନ ଦାଶ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇ ନ ଥିଲେ ମଧ୍ୟ ତାହାଙ୍କ ଗୁଣକୁ ଗ୍ରହଣ କରିବାରେ ସେ କୁଣ୍ଠିତ କରି ନ ଥିଲେ । ଗୁଣଗ୍ରାହକତା ମହାନୁଭବତାର ପ୍ରଧାନ ଲକ୍ଷଣ ।

ମହାତ୍ମା ଉତ୍କଳ ଭ୍ରମଣ କରିଥିଲେ । ଉତ୍କଳବାସୀଙ୍କ ଶୋଚନୀୟ ଅବସ୍ଥା ସେ ଚକ୍ଷୁରେ ଦେଖିଥିଲେ । ସେହି ଶୋଚନୀୟ ଦୃଶ୍ୟ ତାହାଙ୍କ ହୃଦୟକୁ ଏପରି ଆଘାତ କରିଥିଲା ଯେ ତାହା ଗଭୀର ଅକ୍ଷରରେ ତାହାଙ୍କ ସ୍ମୃତି-ପଟରେ ଖୋଦିତ ହୋଇ ଯାଇଥିଲା । ୧୯୨୭ ସାଲର ସେପ୍ଟେମ୍ବର ମାସରେ ମାନ୍ଦ୍ରାଜରେ ଗୋଟିଏ ସଭାରେ ଉତ୍କଳର କରୁଣ ଦୃଶ୍ୟ ସେ ବର୍ଣ୍ଣନା କରିଥିଲେ । **Our sweetest songs are those that tell of saddest thougsts** କରୁଣ ରସର ସଙ୍ଗୀତ ଶୁଣିବାକୁ ମନୁଷ୍ୟକୁ ପ୍ରୀତିକର ଲାଗେ । ପରର ଦୁଃଖ ଶୁଣି ତାହାପ୍ରତି ସମବେଦନା ପ୍ରକାଶ କରିବା ମାନବ-ଆତ୍ମାର ସ୍ୱଭାବ । ଏଣୁ କରୁଣ ରସର ସଙ୍ଗୀତ ତାହାଙ୍କୁ ମଧୁର ଲାଗେ । କିନ୍ତୁ କରୁଣ ରସର ସଙ୍ଗୀତ କିଏ ଗାଇ

ଯାରେ ? କରୁଣ ଦୃଶ୍ୟ ଦେଖି ତାହାରେ ଯେ ଅଭିଭୂତ ହୋଇ ପାରେ ସେ କରୁଣ ରସର ଗୀତ ଗାଇ ପାରେ । ଯେ ଅଭିଭୂତ ହୋଇପାରେ ସେ ପାଷାଣ । ତାହାର ମୁଖରୁ ଭାଷା ସ୍ଫୁରିବା ଅସମ୍ଭବ ।

କଲିକତା କଂଗ୍ରେସର ଦାବି ଲାହୋର କଂଗ୍ରେସରେ ଗୃହୀତ ହେଲା । ସେ ଦିନଠାରୁ ପୂର୍ଣ୍ଣ ସ୍ୱାଧୀନତା ଭାରତର ଦାବି ବୋଲି ସମସ୍ତେ ଜାଣିଲେ । ୧୯୩୦ ସାଲର ଫେବୃଆରି ୨୬ ତାରିଖ ସ୍ୱାଧୀନତା-ଦିବସ ବୋଲି ଘୋଷିତ ହେଲା । ସ୍ୱାଧୀନତା-ଦିବସ ରୂପେ ପ୍ରତ୍ୟେକ ବର୍ଷ ଫେବୃଆରି ୨୯ ତାରିଖ ଦିନଟି ଭାରତର ସର୍ବତ୍ର ପାଳିତ ହେଲା । ମହାତ୍ମାଜୀ ମାର୍ଚ୍ଚ ମାସରେ ସରକାରଙ୍କୁ ଚରମ-ପତ୍ର ଲେଖି ସତ୍ୟାଗ୍ରହ ଆରମ୍ଭ କରିବାର ସଂକଳ୍ପ ଜଣାଇ ଦେଇ ଥିଲେ । ଏହା ପୂର୍ବରୁ ବାରଦୋଲିର କୃଷକମାନଙ୍କ ଭୂମିର ଖଜଣା ଅତ୍ୟଧିକ ଥିବାରୁ ସେଠାରେ ଖଜଣା ହ୍ରାସ ନିମନ୍ତେ ନିରୁପଦ୍ରବ ସତ୍ୟାଗ୍ରହ ଚଳାଇ ମହାତ୍ମାଜୀ କୃତକାର୍ଯ୍ୟ ହୋଇଥିଲେ । ସରକାରଙ୍କୁ ଚରମପତ୍ର ଦେବା ପୂର୍ବରୁ ବ୍ରିଟିଶ୍ ସରକାର ଉପଲବ୍ଧି କରିଥିଲେ ଚେମ୍ସଫୋର୍ଡ ଶାସନ-ସଂସ୍କାର ଦ୍ୱାରା ଭାରତର ଜାତୀୟତାବାଦୀମାନେ କୌଣସି ପ୍ରକାରେ ତୃପ୍ତ ରହିବେ ନାହିଁ । ଏଣୁ ନୂତନ ଶାସନ-ସଂସ୍କାର ପ୍ରବର୍ତ୍ତନ କରିବା ଉଦ୍ଦେଶ୍ୟରେ ଭାରତର ଅବସ୍ଥା ବିବେଚନା କରିବା ପାଇଁ ଗୋଟିଏ ସାଇମନ କମିଶନ ବ୍ରିଟିଶ ସରକାର ନିଯୁକ୍ତ କରିଥିଲେ । କିନ୍ତୁ ତହିଁରେ କୌଣସି ଭାରତୀୟର ସ୍ଥାନ ନ ଥିଲା । ଏଥିରୁ ସ୍ପଷ୍ଟ ଜଣା ପଡ଼ୁଥିଲା ଯେ, ଭାରତକୁ ସ୍ୱାଧୀନତା ଦେବା ପାଇଁ ସରକାରଙ୍କର ଇଚ୍ଛା ନ ଥିଲା ।

ମହାତ୍ମାଜୀ ଭଲରୂପେ ଉପଲବ୍ଧି କରିଥିଲେ ଯେ, ପିଲା ନ କାନ୍ଦିଲେ ମାଆ ତାହାକୁ କ୍ଷୀର ଦିଏ ନାହିଁ । ବିଶ୍ୱରେ ପ୍ରକୃତରେ ଏ

ନିସ୍ତ୍ୱମ ଚଳି ଆସୁଥିବାରୁ ଏହା ଆନ୍ଦୋଳନରେ ସରକାର ନିଜର ଘାଉଦାଣ୍ଡି ଛାଡ଼ ଦେବେ ବୋଲି ବିଶ୍ୱାସ କରିବା ଅଜ୍ଞତାର ପରିଚାୟକ । ଆନ୍ଦୋଳନ କ୍ରମାଗତ ଚାଲୁଥିବାରୁ ସରକାରଙ୍କର ଚିଙ୍କଏ ଚିଙ୍କଏ ନାଦ ଭାଙ୍ଗୁଅଛି । ଆନ୍ଦୋଳନର ବହ୍ନି ପ୍ରଥମେ ମିଞ୍ଜି ମିଞ୍ଜି ଜଳୁ ଜଳୁ ଦିନେ ଏହା ପ୍ରବଳ ଶିଖା ବିସ୍ତାର କରିବ । ସେତେବେଳେ ବ୍ରିଟିଶ କାଉର ସମ୍ପୂର୍ଣ୍ଣରୂପେ ନାଦ ଭାଙ୍ଗିବ । ଉତ୍ତେଜନାର କାର୍ଯ୍ୟ କ୍ଷଣିକ । ଅନ୍ତରର ପ୍ରେରଣାରୁ ଯେଉଁ କାର୍ଯ୍ୟରେ ଆତ୍ମନିୟୋଗ କରାଯାଏ ସେହି କାର୍ଯ୍ୟରେ ଅଧ୍ୟବସାୟର ଅଭାବ ଦେଖା ଯାଏ ନାହିଁ । ଜନସାଧାରଣଙ୍କ ହୃଦୟରେ ସ୍ୱାଧୀନତା ସଂଗ୍ରାମ ପାଇଁ ଅନ୍ତରର ପ୍ରେରଣା ଜାଗରିତ କରିବାକୁ ଉପଯୁକ୍ତ ଅବସ୍ଥା ଓ ସୁବିଧା ମିଳିଲା । ଯେତେବେଳେ କୌଣସି ଭାରତୀୟଙ୍କୁ ସାଇମନ କମିଶନରେ ସ୍ଥାନ ଦିଆ ନ ଗଲା ସେତେବେଳେ ପ୍ରତ୍ୟେକ ଭାରତବାସୀ ସମ୍ବାଦପତ୍ରମାନଙ୍କରେ ସରକାରଙ୍କ ପ୍ରତି ନିଜ ନିଜ କଟୁ ମନୋଭାବ ବ୍ୟକ୍ତ କରିଥିଲେ । ଏହି ପରିସ୍ଥିତିରେ କମିଶନ ବର୍ଜ୍ଜନ କରିବା ପାଇଁ ମହାତ୍ମାଜୀ ପରାମର୍ଶ ଦେଲେ । କମିଶନ ୧୯୩୦ ସାଲର ଫେବୃଆରୀ ୩ ତାରିଖରେ ବୋମ୍ବାଇରେ ଅବତରଣ କରିଥିଲେ । ସେଦିନ ସେଠାରେ ଭାରତର ଅସନ୍ତୋଷ ହରତାଳ-ପାଳନରେ ମୂର୍ତ୍ତିମନ୍ତ ହୋଇ କମିଶନକୁ ସମ୍ବର୍ଦ୍ଧନା କରିଥିଲା ।

୧୯୩୦ ସାଲର ମାର୍ଚ୍ଚ ମାସର ୧୨ ତାରିଖରେ ୭୯ ଜଣ ସତ୍ୟାଗ୍ରହୀ ସଙ୍ଗରେ ଘେନି ସକାଳେ ୬ଟା ବାଜିବା ମୁହୂର୍ତ୍ତରେ ଲବଣ ଆଇନ-ଅମାନ୍ୟ କରିବା ପାଇଁ ମହାତ୍ମାଜୀ ପଦବ୍ରଜରେ ଦାଣ୍ଡି ନିକଟବର୍ତ୍ତୀ ସମୁଦ୍ର କୂଳକୁ ଯାତ୍ରା କରିଥିଲେ । ଏ ଦିନଟି ଭାରତର ଇତିହାସରେ ସୁବର୍ଣ୍ଣ ଅକ୍ଷରରେ ଲେଖା ହୋଇ ରହିବ । ସେଦିନ

ଅମୃତସରର ଯେଉଁ ବହ୍ନି-କଣା ଦେଖାଗଲା ତାହା ଭାରତର ପ୍ରତ୍ୟେକ ପୁରପଲ୍ଲୀକୁ ଦ୍ୱିଗୁଣ-ଅଧିକ କରୁଛ କରୁଛ ଶିଖା ବିସ୍ତାର କରିଥିଲା । ଏହି ଆନ୍ଦୋଳନର ଗତ-କାଳରେ ଅନେକଗୁଡ଼ିଏ ହତ୍ୟାକାଣ୍ଡ ଘଟି ଯାଇଥିଲା । ନେତାମାନେ ପୂର୍ବ ଆନ୍ଦୋଳନ ପରି କାରା-ଗୃହରେ ବିଶ୍ରାମ ନେଲେ । ତଥାପି ଜନସାଧାରଣ ଆନ୍ଦୋଳନରୁ ହଟି ନ ଥାଆନ୍ତି । ବିଦେଶୀ ଦ୍ରବ୍ୟ ବର୍ଜନ କରିବା ନୀତିକୁ ଲୋକେ ପ୍ରାୟ ପନ୍ଦରପଣ ମାନି ଚଳିଥିଲେ । ଏଣୁ ପୃଥିବୀରେ ଅବିଳମ୍ବେ ଅର୍ଥ-ନୈତିକ ସଙ୍କଟ ଉପସ୍ଥିତ ହୋଇଥିଲା । ଏ ମଧ୍ୟରେ ସାଇମନ କମିଶନ ଭାରତର ଅବସ୍ଥା ବିବେଚନା କରି ନୂତନ ଶାସନ-ପ୍ରଣାଳୀ ସମ୍ବନ୍ଧରେ ଗୋଟିଏ ରିପୋର୍ଟ ବ୍ରିଟିଶ୍ ସରକାରଙ୍କୁ ଦେଇଥିଲେ । କିନ୍ତୁ ଭାରତର ଅବସ୍ଥା ଏପରି ଗୁରୁତର ହୋଇଥିଲା ଯେ, ଭାରତର ନେତାମାନଙ୍କୁ ଡାକି ଗୋଲ୍‌ଟେବୁଲ ବୈଠକରେ ଶାସନ-ଖସଡ଼ା ତିଆରି କରିବାର ପ୍ରୟୋଜନୀୟତା ସରକାର ଉତ୍ତମରୂପେ ଉପଲବ୍ଧି କରିଥିଲେ । ମାତ୍ର ପ୍ରକୃତ ସ୍ୱାଧୀନତା ଦେବା ସେମାନଙ୍କର ଉଦ୍ଦେଶ୍ୟ ନ ଥିଲା । ଅଗ୍ନି ନିଭିଗଲେ ପୁଣି ତାକୁ ଲଗାଇବା ସମୟସାପେକ୍ଷ । ସ୍ୱାଧୀନତା ପାଇବା ଆଶାରେ ଆଶ୍ୱସ୍ତ ହୋଇ ଜାତୀୟତାବାଦୀ ନେତାମାନେ ଯଦି ଆନ୍ଦୋଳନ ଏବେ ବନ୍ଦ କରି ଦିଅନ୍ତି ତେବେ ସହଯା ଆଉ ଆରମ୍ଭ କରି ପାରିବେ ନାହିଁ । ମହାତ୍ମାଜୀ ଆମ୍ଭର ନିର୍ଦ୍ଦେଶ ପାଉଥିବାରୁ ବ୍ରିଟିଶ ଜାତିର କୂଟ ମନୋଭାବ ତାହାଙ୍କ ନିକଟରେ ଛପି ରହି ପାରୁ ନ ଥିଲା । ସେ ବନ୍ଦୀଶାଳାରେ ଥିବା-ବେଳେ ଗୋଲ୍‌ଟେବୁଲ ବୈଠକକୁ ଯିବା ପାଇଁ ଭାରତର ନେତା-ମାନଙ୍କୁ ନିମନ୍ତ୍ରଣ ଆସିଲା । ଅନ୍ୟାନ୍ୟ ନେତାମାନେ ଗଲେ । କିନ୍ତୁ କଂଗ୍ରେସ ତରଫରୁ କେହି ଗଲେ ନାହିଁ । ତଥାପି ବ୍ରିଟିଶ୍ ସରକାରଙ୍କ ପ୍ରଧାନ ମନ୍ତ୍ରୀ ମାକ୍‌ଡୋନାଲ୍‌ଡ଼ ସାହେବ କୌଶଳ ପ୍ରୟୋଗ

କରିବାକୁ ଏକ୍ଷି କଲେ ନାହିଁ। ଗୋଲଟେବୁଲର ପ୍ରଥମ ବୈଠକରେ ଏପରି କାରଣ ଦ୍ୱାରା ଗୋଟିଏ ବକ୍ତୃତା ଦେଇଥିଲେ ଯେ ଯନ୍ତ୍ରରେ ... ଜାତିର ଉଦ୍ଦେଶ୍ୟ ମହାକାଳ ଫଳ ପରି ସୁନ୍ଦରତର ହୋଇ ... I କଂଗ୍ରେସର ନେତାମାନଙ୍କୁ ଦ୍ୱିତୀୟ ବୈଠକକୁ ଆକର୍ଷଣ କରିବା ଉଦ୍ଦେଶ୍ୟରେ ଏପରି ବକ୍ତୃତା ସେ ଦେଇଥିଲେ। ସାପ୍ରୁ ଓ ଜୟକାର ବିଲାତରୁ ଫେରି ଆସି ଜେଲଖାନାରେ ମହାତ୍ମାଜୀଙ୍କ ସଙ୍ଗରେ ଦେଖା କଲେ ଓ ଦ୍ୱିତୀୟ ବୈଠକରେ ଯୋଗ ଦେବା ପାଇଁ ତାହାଙ୍କୁ ପ୍ରବର୍ତ୍ତାଇଲେ। ମହାତ୍ମାଜୀ ବ୍ରିଟିଶ ଜାତିର ମନୋଭାବ ଜାଣି ଥିବାରୁ ସେ ସହଜରେ ରାଜି ହେଉ ନ ଥିଲେ। ସେତେବେଳକୁ ଲର୍ଡ ୟୁରୁଇନ୍ ଭାରତର ବଡ଼ଲାଟ ଥିଲେ। ତାହାଙ୍କ ସଙ୍ଗରେ କେତେଗୁଡ଼ିଏ ସର୍ତ୍ତରେ ୧୯୩୧ ସାଲରେ ମାର୍ଚ୍ଚ ମାସ ୪ ତାରିଖରେ ଉଭୟଙ୍କ ସ୍ୱାକ୍ଷରିତ ହେବାକୁ ସେ ରାଜି ହୋଇଥିଲେ। ଏହା ଏକପ୍ରକାର ଦୁଇ ଯୁଦ୍ଧ-ବ୍ୟାପୃତ ଜାତି ମଧ୍ୟରେ ସନ୍ଧି-ପତ୍ର ପରି, ସାମାନ୍ୟ ଗୌରବର କଥା ନୁହେ। ଅହିଂସା-ଆନ୍ଦୋଳନରେ ପ୍ରବର୍ତ୍ତକ ସମ୍ବାଦରେ ବ୍ରିଟିଶ ଜାତି ଶାସିତ ଜାତି ସଙ୍ଗେ ସନ୍ଧି-ପତ୍ର ସ୍ୱାକ୍ଷର କରିଥିଲେ। ଦୁଃଖର କଥା, ଅନେକ କଂଗ୍ରେସ କର୍ମୀ ଅହିଂସା-ଆନ୍ଦୋଳନର ଗୁରୁତ୍ୱ ତଥାପି ବୁଝି ପାରିଲେ ନାହିଁ। ଏଣୁ ଭବିଷ୍ୟତରେ କେତେକ ନେତା କଂଗ୍ରେସର ଭାଗ୍ୟ ଚକ୍ରା ମାନାଇଲା ନ ଥିଲା।

୧୯୩୧ ସାଲର ସେପ୍ଟେମ୍ବର ୧୨ ତାରିଖରେ ମହାତ୍ମାଜୀ ଲଣ୍ଡନରେ ପହଞ୍ଚିଲେ। ସେଠାରେ ସେ ସନ୍ନ୍ୟାସୀର ଅତୀତ ପୋଷାକ ପରିତ୍ୟାଗ କରି ନ ଥିଲେ। ଗୋଲଟେବୁଲ ସଭାର ଦ୍ୱିତୀୟ ବୈଠକରେ ଯୋଗ ଦେଲେ ଏବଂ ସେ ଭାରତର ଦାବୀ



୧୯୩୧ ଗୋଲଟେବୁଲ ବୈଠକରେ ଯୋଗ ଦେବାପାଇଁ ଲଣ୍ଡନ ଯାଉଥିବା ସମୟରେ ଲଣ୍ଡନରେ ବିପୁଳ ସମ୍ବର୍ଦ୍ଧନା

ସେପରି ପ୍ରାଞ୍ଜଳ ଭାବରେ ବୁଝାଇ ଦେଇଥିଲେ ଯେ ତାହା ଅଯଥା ବୋଲି କହିବାକୁ କାହାର ସାମର୍ଥ୍ୟ ନ ଥିଲା । ତେଣୁ ଶୋଷିତ ଜାତିର ନାଦ ନ ଶୁଣିଲେ କଅଣ ହେଲା ! ପୃଥିବୀର ଅନ୍ୟାନ୍ୟ ଜାତିଙ୍କର ଭାରତ ସମ୍ବନ୍ଧରେ ସମ୍ପୂର୍ଣ୍ଣରୂପେ ଆଖି ଫିଟି ଯାଇଥିଲା ! ସଭାର ନିରର୍ଥକତା ମହାତ୍ମାଜୀ ପୂର୍ବରୁ ଜାଣିଥିଲେ । ଅଯଥା ଏକ-ଜିଦିଆ ସ୍ୱଭାବ ତାହାଙ୍କର ନ ଥିଲା । ଦ୍ୱିତୀୟ ବୈଠକରେ ଯୋଗ ଦେବାରୁ ଜଗତର ସମ୍ମୁଖରେ ତାହା ପ୍ରକଟିତ ହେଲା ! ଯେ ସତ୍ୟର ଉପାସକ ସେ ଏକଜିଦିଆ ହେବ କାହିଁକି ? ଅନ୍ୟର କଥାରେ ସତ୍ୟତା ଅଛି କି ନାହିଁ ତାହା ପରୀକ୍ଷା କରିବା ପାଇଁ ସେ କଦାପି ସଙ୍କୁଚିତ ହେବ ନାହିଁ ।

ମହାତ୍ମାଜୀ ଫେରି ଆସିଲେ । ବାଟରେ ଇଟାଲୀର ଶାସକ ମୁସୋଲିନୀଙ୍କ ସଙ୍ଗେ ସାକ୍ଷାତ୍ କରିଥିଲେ । ୧୯୩୨ ସାଲର ଜାନୁଆରୀ ୪ ତାରିଖରେ ବୋମ୍ବେଇର ମଣି ଭବନରେ ତାହାଙ୍କୁ ଗିରଫ୍ କରାଗଲା । ସଙ୍ଗେ ସଙ୍ଗେ ଅନ୍ୟ ନେତାମାନେ ମଧ୍ୟ ବନ୍ଦୀ ହେଲେ । କିନ୍ତୁ ଏଥର ବିପ୍ଳବ-ବହ୍ନି ପ୍ରବଳ ଆକାର ଧାରଣ କଲା ନାହିଁ । କାରଣ କଂଗ୍ରେସ ଛଡ଼ା ଭାରତର ଅନ୍ୟାନ୍ୟ ନେତା-ମାନଙ୍କର ଗୋଲ୍‌ଟେବୁଲ୍ ପ୍ରତି ବିଶ୍ୱାସ ଥିଲା । ନଗ୍ନ ଦମନର ତାଣ୍ଡବ-ଲୀଳାରେ ବିପ୍ଳବ-ବହ୍ନି ଉପଶମିତ ହେଲା ବୋଲି ସରକାର ସେତେବେଳେ ଭାବିଥିଲେ କି ନାହିଁ କହିବା କଠିନ । କାରଣ ବିପ୍ଳବ-ବହ୍ନି ପ୍ରବଳ ରୂପ ଧାରଣ ନ କଲେ ମଧ୍ୟ ଅବିରତ ମୃଦୁ ଭାବରେ ଜଳୁଥିଲା ।

ଅସଲ ଜାତୀୟତାବାଦୀ ନେତାମାନଙ୍କୁ କାରାଗୃହରେ ରଖି ଶାସନ-ସଂସ୍କାରର ବିଧି ପ୍ରଣୟନ କରିବାକୁ ସରକାର କୁଣ୍ଠିତ ହୋଇ

ନ ଥିଲେ । ବର୍ଦ୍ଧି ପ୍ରାଣପୂନ କଲାବେଳେ ହରିଜନମାନେ ଶାସନ-ପରିଷଦକୁ ପୃଥକ୍ ସଭ୍ୟ ନିର୍ବାଚନ କରିବେ ବୋଲି ପ୍ରସ୍ତାବ ହୋଇଥିଲା । ମହାତ୍ମାଜୀ ହରିଜନମାନଙ୍କ ହିତ ପାଇଁ ଆଜୀବନ ଖଟୁଥିଲେ । ସେମାନଙ୍କ ସେବା ପାଇଁ ଜୀବନ ଉତ୍ସର୍ଗ କରିବା କଂଗ୍ରେସର ନୀତି ହୋଇଥିଲା । ସବୁ ଜାଣି ଶୁଣି ସରକାର ହରିଜନମାନଙ୍କ ପାଇଁ ପୃଥକ୍ ସଭ୍ୟ ନିର୍ବାଚନର ବ୍ୟବସ୍ଥା କରୁଥିଲେ । କାରଣ ପାଣିରୁ ମାଛ ଅଲଗା ହେଲେ ବକର ଲାଭ । ଭେଦ-ନୀତିରେ ନିଜର ଆଧିପତ୍ୟ ଭାରତରେ ଚିରସ୍ଥାୟୀ କରିବା ବ୍ରିଟିଶ ଜାତିର ପ୍ରଧାନ ନୀତି ହୋଇଥିଲା । ସରକାରଙ୍କୁ ବନ୍ଦୀଶାଳାରୁ ମହାତ୍ମାଜୀ ସେପ୍ଟେମ୍ବର ୧୨ ତାରିଖରେ ଜଣାଇ ଦେଇଥିଲେ ଯେ, ହରିଜନଙ୍କ ପାଇଁ ପୃଥକ୍ ସଭ୍ୟ ନିର୍ବାଚନର ବ୍ୟବସ୍ଥା କଲେ ସେ ଅନଶନରେ ପ୍ରାଣ ହରାଇବେ । ୨୪ ତାରିଖରେ ଉପବାସ ଆରମ୍ଭ କରି ୨୬ ତାରିଖରେ ତାହା ଭଙ୍ଗ କରିଥିଲେ । ସାମ୍ପ୍ରଦାୟିକ ବଣ୍ଟାରେ ହିନ୍ଦୁ ସମ୍ପ୍ରଦାୟକୁ ବିଭକ୍ତ କରିବା ପାଇଁ ଯେଉଁ ବ୍ୟବସ୍ଥା ହୋଇଥିଲା ତାହା ରଦ୍ଦ ହେଲା । ଏହାକୁ ପୁନା-ଚୁକ୍ତି କହନ୍ତି ।

୧୯୩୩ ସାଲର ମେ ୮ ତାରିଖରେ ଆତ୍ମ ଶୁଦ୍ଧି ଓ ସହକର୍ମୀମାନଙ୍କ ଅନ୍ତର ଶୁଦ୍ଧି ପାଇଁ ଅନଶନ ଆରମ୍ଭ କରିଥିଲେ । ସେ ଦିନ ତାହାଙ୍କୁ କାରାଗାରରୁ ମୁକ୍ତ ଦିଆ ଯାଇଥିଲା । ଆଇନ ଅମାନ୍ୟ ମାସକ ପାଇଁ ସ୍ଥଗିତ ରହିଲା ବୋଲି ସେ ଘୋଷଣା କରିଥିଲେ । ତତ୍ପରେ ଉକ୍ତ ମାସ ୨୯ ତାରିଖରେ ଉପବାସ ଭଙ୍ଗ କରିଥିଲେ । ଜୁଲାଇ ୨୬ ତାରିଖରେ ସବରମତୀ ଆଶ୍ରମ ସେ ଭାଙ୍ଗି ଦେଇଥିଲେ । ତାହାର କାରଣ ଖୋଜି ପାଇବା କଠିନ । କିନ୍ତୁ ସେହି ବର୍ଷ ଅଗଷ୍ଟ ପହିଲା ତାରିଖରେ ମହାତ୍ମା ଗାନ୍ଧୀ, ତାହାଙ୍କ ପତ୍ନୀ, ମହାଦେବ

ଦେଶାଇ ଓ ସବାରମତୀ ଆଶ୍ରମର ଅନ୍ୟାନ୍ୟ କର୍ମୀ ସମେତ ୩୨ ଜଣଙ୍କୁ ଶେଠ ରଣଛୋଡ଼ଲାଲର ବଙ୍ଗଳାରେ ଗିରଫ କରାଯାଇ ସେମାନଙ୍କୁ ସବରମତୀ ଜେଲକୁ ନିଆ ଯାଇଥିଲା । କାରଣ; ସମୁଦ୍ର ଆଇନ ଅମାନ୍ୟରେ ଶାନ୍ତିଭଙ୍ଗ ଘଟିଥିବାର ଜାଣି ସେ ବ୍ୟକ୍ତିଗତ ଆଇନ ଅମାନ୍ୟ ଘୋଷଣା କରିବାକୁ ପ୍ରସ୍ତୁତ ହେଉଥିଲେ । ସେ ସମ୍ପର୍କରେ କଯୂରା ଜିଲାର ଖମ ନାମ ସ୍ଥାନକୁ ଯାଇ ସେଠାର ଅଧିବାସୀମାନଙ୍କୁ ବ୍ୟକ୍ତିଗତ ଆଇନ ଅମାନ୍ୟ କରିବା ବାଧି ଶିଖାଇବାକୁ ସ୍ଥିର କରିଥିଲେ । ଗିରଫ ହେବା ପରଠାରୁ ପୁନାର ଜିଲା ମାଜିଷ୍ଟ୍ରେଟ ତାହାଙ୍କୁ ବିନାଶ୍ରମର ଏକବର୍ଷବ୍ୟାପୀ କାରାଦଣ୍ଡରେ ଦଣ୍ଡିତ କରିଥିଲେ ।

ଜେଲରେ ରହି ହରିଜନଙ୍କ ସେବା ପାଇଁ ମହାତ୍ମାଜୀ ସରକାରଙ୍କୁ କେତେଗୁଡ଼ାଏ ସୁବିଧା ମାଗିଥିଲେ । ମାତ୍ର ଯେଉଁ ସର୍ତ୍ତରେ ସରକାର ସୁବିଧା ଦେବେ ବୋଲି ରାଜି ହୋଇଥିଲେ ମହାତ୍ମାଜୀ ତାହା ଗ୍ରହଣ ନ କରି ଅଗଷ୍ଟ ୧୬ ତାରିଖରେ ଉପବାସ ଆରମ୍ଭ କରିଥିଲେ । ୨୩ ତାରିଖରେ ବିନା ସର୍ତ୍ତରେ ତାହାଙ୍କୁ ମୁକ୍ତି ଦିଆ ଗଲା । ନଭେମ୍ବର ୭ ତାରିଖରେ ହରିଜନଙ୍କ ଉନ୍ନତି ପାଇଁ ସମଗ୍ର ଦେଶ ଭ୍ରମଣ କରିଥିଲେ । ଏହି ସମୟରେ ସଂକୀର୍ଣ୍ଣଚେତା ଏକଶ୍ରେଣୀର ହିନ୍ଦୁ ତାହାଙ୍କ ପ୍ରାଣ ନାଶର ଚେଷ୍ଟା କରିଥିଲେ । ୧୯୩୪ ସାଲର ମେ ୧୪ ତାରିଖରେ ପଦବ୍ରଜରେ ଭ୍ରମଣ କରି ଅଗଷ୍ଟ ୭ ତାରିଖରେ ସତ୍ୟାଗ୍ରହ-ଆଶ୍ରମରେ ସାତଦିନ ବ୍ୟାପୀ ଅନଶନ ଆରମ୍ଭ କରିଥିଲେ । ଏତେ ଥର ଅନଶନ କରିବାର କାରଣ ଲୋକେ ସାଧାରଣ ମନୁଷ୍ୟ ଏହାକୁ ନିରର୍ଥକ ବୋଲି ଉଡ଼ାଇ ଦେଉଛନ୍ତି । ଶରୀର ଯେତେବେଳେ ସବଳ ଥାଏ ମନୁଷ୍ୟର ବୁଦ୍ଧିର ଉପରେ ଇନ୍ଦ୍ରିୟର ବାଧା ସେତେବେଳେ ଥାଏ । ମଧ୍ୟେ ମଧ୍ୟେ ଉପବାସ କରି

ଈଶ୍ୱରଙ୍କଠାରେ ଆତ୍ମ ସମର୍ପଣ କଲେ ଇନ୍ଦ୍ରିୟମାନଙ୍କ ପ୍ରଭାବ ନଷ୍ଟ ହୋଇ ବିଶୁଦ୍ଧ ବୁଦ୍ଧିର ବିକାଶ ଘଟେ । ଏଥିପାଇଁ ହିନ୍ଦୁ ଶାସ୍ତ୍ରରେ ଉପବାସର ବ୍ୟବସ୍ଥା ଅଛି । ମହାତ୍ମାଜୀ ଏହି ବ୍ୟବସ୍ଥାରୁ ଅନ୍ୟ ସତ୍ୟ ଅନୁସନ୍ଧାନ କରୁଥିଲେ । ସ୍ୱେଚ୍ଛାରେ ଶାରୀରିକ ଯନ୍ତ୍ରଣା ବରଣ କଲେ ଶତ୍ରୁର ତାହାଙ୍କ ପ୍ରତି ଯେଉଁ ଭ୍ରାନ୍ତ ଧାରଣା ଥିବ ତାହା ସହଜରେ ଦୂର ହୋଇ ପାରିବ । ଅଥବା ନିଜେ ଯଦି କାହାରି ଅନିଷ୍ଟ ପାଇଁବା ପାଇଁ କୈବାତ୍ ଆକୃଷ୍ଟ ହୋଇ ପଡ଼ିଥିବେ ତେବେ ତାହା ଉପବାସଦ୍ୱାରା ସହଜରେ ବୁଝି ପାରିବେ । ବିଶେଷତଃ ଅନ୍ୟ ଲୋକଦ୍ୱାରା ଅତ୍ୟାଚାରିତ ହେଲେବେଲେ ଉପବାସଦ୍ୱାରା ଆତ୍ମକ୍ଲେଶ ନ ସହିଲେ ହୃଦୟରେ ପ୍ରତିହିଂସା ଜାଗିବା ସ୍ୱାଭାବିକ ।

୧୯୩୪ ସାଲର ସେପ୍‌ଟେମ୍ବର ୨୭ ତାରିଖରେ ବୋମ୍ବେଇ-ଠାରେ କଂଗ୍ରେସର ଅଧିବେଶନରେ ମହାତ୍ମାଜୀ କଂଗ୍ରେସ ସହିତ ନିଜର ସମ୍ବନ୍ଧ ପରିତ୍ୟାଗ କରିଥିଲେ । ତାହାଙ୍କର ଏହି ସିଦ୍ଧାନ୍ତରେ ସମଗ୍ର ଜାତି ସ୍ତମ୍ଭିତ ହୋଇ ଯାଇଥିଲା । ସେ କଂଗ୍ରେସକୁ ଯଥାର୍ଥ ଅନୁଷ୍ଠାନ ରୂପେ ଗଢ଼ି ତାହାକୁ ପରିଚାଳନା କରୁଥିଲେ । ସେ କଂଗ୍ରେସର ସମ୍ପର୍କ ତ୍ୟାଗ କଲେ ମୁକ୍ତି-ସଂଗ୍ରାମରେ ସମସ୍ତେ ନିରସ ହୋଇ ପଡ଼ିବେ । କିନ୍ତୁ ମୁକ୍ତି-ସଂଗ୍ରାମକୁ ଡରି ସେ କଂଗ୍ରେସ ସମ୍ପର୍କ ଛାଡ଼ି ନ ଥିଲେ । ବ୍ରିଟିଶ ସରକାରଙ୍କ ସଙ୍ଗେ ସାକ୍ଷାତ୍ ସଂଗ୍ରାମ କରିବା ଠାରୁ ଦେଶ-ସେବା କରିବା ପରୋକ୍ଷ ସଂଗ୍ରାମ ବଳବତ୍ତର ବୋଲି ବୁଝାଇ ଦେବାପାଇଁ ସେ କଂଗ୍ରେସର ସମ୍ପର୍କ ତ୍ୟାଗ କରିଥିଲେ ।

୧୯୩୫ ସାଲର ଜୁନ୍ ୨ ତାରିଖରେ ମହାତ୍ମାଜୀ କ୍ୱେଟା ଯିବାପାଇଁ ବଡ଼ଲାଟଙ୍କୁ ଅନୁମତି ମାଗିଥିଲେ । ବଡ଼ଲାଟ ତାହାଙ୍କ ଅନୁରୋଧ ରକ୍ଷା କରି ନ ଥିଲେ । ୧୯୩୫ ସାଲକୁ ଗୋଲ୍‌ଟେବୁଲ

ଯାହାରେ ବ୍ରିଟିଶ ସରକାର ପକ୍ଷରୁ ନିର୍ଦ୍ଧାରିତ ଶାସନ-ପଦ୍ଧତିର ସ୍ୱରୂପ ଭାରତକୁ ଆସି ଯାଇଥିଲା । ଏହା ଗ୍ରହଣୀୟ କି ନା, ଏ ବିଷୟରେ କଂଗ୍ରେସ ମହଲରେ ଅନେକ ବାଦାନୁବାଦ ଚାଲିଥିଲା । ଏହାକୁ ଗ୍ରହଣ କରି କଂଗ୍ରେସ ତରଫରୁ ବ୍ୟବସ୍ଥାପକ ସଭାମାନଙ୍କୁ ସଭ୍ୟମାନେ ୧୯୩୭ ସାଲରେ ନିର୍ବାଚିତ ହୋଇ ଗଲେ । କିନ୍ତୁ ମନ୍ତ୍ରିତ୍ୱ ଗ୍ରହଣ କରି ନ ଥିଲେ । କାରଣ, ଏହି ଶାସନ-ପଦ୍ଧତିରେ ମନ୍ତ୍ରୀମାନଙ୍କ କାର୍ଯ୍ୟରେ ହସ୍ତକ୍ଷେପ କରିପାରିବା କ୍ଷମତା ପ୍ରାଦେଶିକ ଲାଟସାହେବମାନଙ୍କୁ ଦିଆ ଯାଇଥିଲା । ଦୈନନ୍ଦିନ କାର୍ଯ୍ୟରେ ଲାଟସାହେବ ହସ୍ତକ୍ଷେପ କଲେ ମନ୍ତ୍ରୀମାନଙ୍କ ପକ୍ଷରେ ସ୍ୱାଧୀନ ଭାବରେ ଶାସନ ପରିଚାଳନା କରିବା କଷ୍ଟକର । ସ୍ୱାଧୀନ ଭାବରେ ପରିଚାଳନା କରି ନ ପାରିଲେ ଲାଟସାହେବଙ୍କର ହାତରେ କ୍ରୀଡ଼ା-ପୁତ୍ତଳିକା ହୋଇ ରହିବା ଦେଶାତ୍ମବୋଧର ପରିଚାୟକ ନୁହେଁ । ଦୈନନ୍ଦିନ କାର୍ଯ୍ୟରେ ହସ୍ତକ୍ଷେପ କରି ପାରିବେ ନାହିଁ ବୋଲି ବଡ଼ଲାଟ ପ୍ରତିଶ୍ରୁତି ଦେଲେ କଂଗ୍ରେସ ମନ୍ତ୍ରିତ୍ୱ ଗ୍ରହଣ କରିବା ପାଇଁ ରାଜି ଥିଲା । କିନ୍ତୁ ଏପରି ପ୍ରତିଶ୍ରୁତି ଦେବାପାଇଁ ବଡ଼ଲାଟଙ୍କର କ୍ଷମତା ଅଛି କି ନାହିଁ, ଏ ବିଷୟରେ ପ୍ରଶ୍ନ ଉଠିଥିଲା । ଏ ପ୍ରସଙ୍ଗରେ ୧୯୩୭ ସାଲର ଜୁଲାଇ ୭ ତାରିଖରେ ୱାର୍ଦ୍ଧାଠାରେ କଂଗ୍ରେସର କାର୍ଯ୍ୟ-ନିର୍ବାହକ ସମିତିର ବୈଠକ ବସିବା ପୂର୍ବରୁ ମହାତ୍ମାଜୀ ଗୋଟିଏ ବିବୃତି ଦେଇଥିଲେ । ପ୍ରତିଶ୍ରୁତି ଦେବାପାଇଁ ବଡ଼ଲାଟଙ୍କର କ୍ଷମତା ଅଛି ବୋଲି ସେ ଏହି ବିବୃତିରେ ପ୍ରମାଣ କରି ଦେଇଥିଲେ । ସେତେବେଳେ କୁଟଭାଷାରେ ଲିପିବଦ୍ଧ ଶାସନ-ପଦ୍ଧତିର ଗୂଢ଼ ମର୍ମ ଗ୍ରହଣ କରିବାରେ ମହାତ୍ମାଜୀଙ୍କର ଅଦ୍ଭୁତ ବିଚକ୍ଷଣତା ଦେଖି ବିଲାତର ରାଜନୀତିଜ୍ଞମାନେ ଚମତ୍କୃତ ହୋଇଥିଲେ । ବଡ଼ଲାଟ ବାଧ୍ୟ ହୋଇ ପ୍ରତିଶ୍ରୁତି ଦେଇଥିଲେ ।

ମହାତ୍ମାଜୀ ସମର୍ଥନ କରିବାରୁ ଜୁଲାଇ ୭ ତାରିଖରେ ମନ୍ତ୍ରିତ୍ୱ ଗ୍ରହଣ କରିବାର ପ୍ରସ୍ତାବ କଂଗ୍ରେସ ଗ୍ରହଣ କରିଥିଲା । ଏହି ଶାସନ-ପଦ୍ଧତିରେ ମନ୍ତ୍ରୀଙ୍କ ହାତକୁ ଯେତିକି କ୍ଷମତା ଦିଆ ଯାଇଥିଲା, ତାହାରି ବଳରେ ଦେଶବାସୀଙ୍କର କିଛି ହିତସାଧନ କରି ପାରିଲେ ପୂର୍ଣ୍ଣ ଶାସନ-କ୍ଷମତା ମନ୍ତ୍ରୀମାନେ ଯେପରି ହାସଲ କରନ୍ତି, ସେଥିପ୍ରତି ଜନସାଧାରଣ ଅବଶ୍ୟ ଲଢ଼ିବେ—ଏପରି ବିଶ୍ୱାସ ମହାତ୍ମାଜୀଙ୍କର ଥିଲା ବୋଲି ବୁଝାଯାଏ ।

ପ୍ରାଦେଶିକ ଲାଟସାହେବମାନେ ମନ୍ତ୍ରୀମାନଙ୍କ ଦୈନନ୍ଦିନ କାର୍ଯ୍ୟରେ ହସ୍ତକ୍ଷେପ କରି ପାରିବେ ନାହିଁ ବୋଲି ବଡ଼ଲାଟ ଯେତେବେଳେ ପ୍ରତିଶ୍ରୁତି ଦେଲେ ସେତେବେଳକୁ ଭାରତର ତଥା ସମଗ୍ର ପୃଥିବୀର ରାଜନୀତି କ୍ରମଶଃ ଜଟିଳତର ହେଉଥାଏ । ଅନ୍ଧକାର ପଛେ ପଛେ ଆଲୋକର ଗତି ପ୍ରକୃତିର ନିୟମ । ନିରସ୍ତ୍ର ଅହିଂସା-ପରାୟଣ କଂଗ୍ରେସ କର୍ମୀମାନେ ଦେଶର ଆତ୍ମ-ମର୍ଯ୍ୟାଦା ଲାଗି ପ୍ରାଣ ଦେବା ପାଇଁ ଆଗ୍ରହ ବଳାଇ ଥିବାରୁ ଭାରତର ସଶସ୍ତ୍ର ବିପ୍ଳବୀ-ମାନଙ୍କର ଦଳ ଓ ସାହସ ମଧ୍ୟ କ୍ରମଶଃ ବଢ଼ି ଯାଉଥିଲା । ଇଂରେଜ ଶାସନର ଦୁର୍ବ୍ୟବହାର ଆଉ ଲୁଚି ରହି ପାରୁ ନ ଥିଲା । ପ୍ରଥମ ମହାସମରରେ ପୃଥିବୀରେ ନ୍ୟାୟ ପ୍ରତିଷ୍ଠା କରିବା ବ୍ରିଟିଶ୍ ଜାତିର ଲକ୍ଷ୍ୟ ବୋଲି ଯେଉଁ ଘୋଷଣା କରି ଯାଇଥିଲା ତାହାର ନିରର୍ଥକତା କ୍ରମଶଃ ପ୍ରତିପାଦିତ ହେଉଥିଲା । ମହାସମରରେ କୌଣସି ପ୍ରକାରେ ବ୍ରିଟିଶ୍ ଜାତି ଜର୍ମାନୀ ପ୍ରତି ସୁବ୍ୟବହାର କରି ପାରି ନ ଥିଲେ । ଇଟାଲୀ ଓ ଜାପାନ ମଧ୍ୟ ଅସନ୍ତୁଷ୍ଟ ହୋଇଥିଲେ । ଆମେରିକା ବିରକ୍ତ ହୋଇ ଇଉରୋପରେ ଯୁଦ୍ଧ ଲାଗିଲେ କୌଣସି ଜାତିକୁ ସାହାଯ୍ୟ କରିବ ନାହିଁ ବୋଲି ମଧ୍ୟ ସ୍ଥିର କରିଥିଲା । କିନ୍ତୁ ଏ ପରିସ୍ଥିତିର

ସୁଯୋଗ ମହାତ୍ମାଜୀ ଆଦୌ ଲୋଡ଼ୁ ନ ଥିଲେ । କାରଣ, ଆତ୍ମନିର୍ଭର-ଶୀଳ ହେବା ମନୁଷ୍ୟର ଯଥାର୍ଥ ଧର୍ମ ବୋଲି ସେ ସର୍ବଦା ବିବେଚନା କରୁଥିଲେ । ବିପଦ କୂଅରେ ପଡ଼ିଥିବାବେଳେ ତାହା ଉପରକୁ ଢେକା ଫିଙ୍ଗିବା କାପୁରୁଷତା ଛଡ଼ା କିଛି ନୁହେଁ । କିନ୍ତୁ ସେତେବେଳକୁ ଭାରତର ଯୁବକ-ସମ୍ପ୍ରଦାୟ ସୁଭାଷବାବୁଙ୍କଠାରେ ଅସୀମ ଆସ୍ଥା ରଖିଥାଏ । ୧୯୩୮ ସାଲରେ ସୁଭାଷବାବୁ କଂଗ୍ରେସର ସଭାପତି ନିର୍ବାଚିତ ହେଲେ । ସେ ସ୍ୱାସ୍ଥ୍ୟୋଦ୍ଧାର ପାଇଁ ଇଉରୋପରେ ରହି ଅଳ୍ପଦିନ ପୂର୍ବରୁ ଭାରତକୁ ଫେରି ଆସନ୍ତି । ଇଉରୋପର ପରିସ୍ଥିତି ତାହାଙ୍କୁ ଭଲରୂପେ ଜଣାଥାଏ । ଏଣୁ ହିଂସାମୂଳକ ବିପ୍ଳବ ପାଇଁ ଦେଶକୁ ପ୍ରସ୍ତୁତ କରିବା ନିମନ୍ତେ ତାଙ୍କର ଏକାନ୍ତ ଅଭିଳାଷ ଥାଏ । କିନ୍ତୁ ମହାତ୍ମାଜୀ ତାହାଙ୍କୁ ସମର୍ଥନ କରନ୍ତି ନାହିଁ । ଅନ୍ୟତମ ପ୍ରଧାନ ନେତା ଜହରଲାଲ ଉପଯୁକ୍ତ ପିତାର ଉପଯୁକ୍ତ ସନ୍ତାନ । ମହାତ୍ମାଜୀଙ୍କ ପ୍ରତି ତାଙ୍କର ଅଗାଧ ଭକ୍ତି ଥିବାରୁ ସେ ସୁଭାଷବାବୁଙ୍କୁ ସମର୍ଥନ କରି ପାରିଲେ ନାହିଁ । କିନ୍ତୁ ମହାତ୍ମାଜୀ ସୁଭାଷବାବୁଙ୍କୁ କୌଣସି ବାଧା ଦେଉ ନ ଥାଆନ୍ତି । ୧୯୩୯ ସାଲରେ ପଟ୍ଟାଭିସୀତାରାମାୟାଙ୍କୁ ହରାଇ ସୁଭାଷବାବୁ କଂଗ୍ରେସର ଦ୍ୱିତୀୟଥର ସଭାପତି ନିର୍ବାଚିତ ହେବାରୁ ମହାତ୍ମାଜୀ ବୁଝି ପାରିଥିଲେ ଯେ, ଦେଶ ବିପଥଗାମୀ ହେଉ-ଅଛି । ପଟ୍ଟାଭିସୀତାରାମାୟା ହାରିବାର ଅର୍ଥ, ସେ ନିଜେ ହାରିବା କହି ମହାତ୍ମାଜୀ ପ୍ରକାଶ୍ୟରେ କହିଥିଲେ ଯେ, ସୁଭାଷବାବୁଙ୍କ କ୍ରିୟାକଳାପ ସେ ସମର୍ଥନ କରି ନ ଥିଲେ । ସୁଭାଷବାବୁଙ୍କ ସାହସ, ଦେଶହିତୈଷିତା ପ୍ରଭୃତି ଗୁଣକୁ ସେ ଭୂୟସୀ ପ୍ରଶଂସା କରି ଅଛନ୍ତି । କିନ୍ତୁ ତାହାଙ୍କର ହିଂସାମୂଳକ ବିପ୍ଳବକୁ କଦାପି ସମର୍ଥନ କରି ନାହାନ୍ତି । ୧୯୩୯ ସାଲର ଏପ୍ରିଲ ୨୭ ତାରିଖରେ କଲିକତାରେ ବସିଥିବା ନିଖିଳ ଭାରତ କଂଗ୍ରେସ କମିଟିକୁ ମହାତ୍ମାଜୀ ଆସିଥିଲେ

ଏଠାରେ ସୁଭାଷବାବୁଙ୍କ ସହିତ ମହାତ୍ମାଜୀଙ୍କର ମତଭେଦ ଆଲୋଚିତ ହେଲା ଓ ସୁଭାଷବାବୁ ସଭାପତି-ପଦରୁ ଅନ୍ତର ହେଲେ । ଏଥିରେ କେତେକ ବଙ୍ଗାଳୀ କ୍ଷୁବ୍ଧ ହେଲେ । କିନ୍ତୁ ସେମାନେ ଗମ୍ଭୀର ଭାବରେ ଚିନ୍ତାକଲେ ବୁଝି ପାରିବେ ଯେ, ଏଥିରେ ମହାତ୍ମାଜୀଙ୍କର ଆଦୌ ଭ୍ରମ ନାହିଁ । "କର୍ମଣ୍ୟେ ବାଧିକାରସ୍ତେ ମା ଫଳେଷୁ କଦାଚନ"—ଏହି ଉପଦେଶକୁ ଭୁଲି ଦୋଷାଦୋଷ ବିଚାର କରିବା ଉଚିତ ନୁହେ । ସୁଯୋଗ ଯଦି ଆସିବାକୁ ଅଛି ତେବେ ଆପେ ଆପେ ଆମ କାର୍ଯ୍ୟର ଉପଯୁକ୍ତ ବେଳକୁ ଆସୁ । ଆମେ ସୁଯୋଗର ଦାସ ହୋଇ ତାହାକୁ ଅନାଇ ବସିବୁ କାହିଁକି ?

ପଣ୍ଡିତ କୃପାସିନ୍ଧୁ ମିଶ୍ରଙ୍କର ପୁସ୍ତ ଜିଲ୍ଲାର ଡେଲାଙ୍ଗ ଷ୍ଟେସନ ପାଖରେ ଗୋଟିଏ ସେବା କୁଟୀର ଥିଲା । ସେଠାରେ ୧୯୩୮ ସାଲର ମାର୍ଚ୍ଚ ମାସରେ ଉତ୍କଳର ଗାନ୍ଧୀ-ସେବା-ସଙ୍ଘର ସମ୍ମିଳନୀ ବସିଥିଲା । ସମ୍ମିଳନୀରେ ଯୋଗ ଦେଉଥିବା ପ୍ରତିନିଧିମାନଙ୍କ ରହିବା ଲାଗି ସେଠାରେ ଡାଳିରେ କୁଟୀର ଗୁଡିଏ ତିଆରି କରି ଯାଇଥିଲା । ସେଥିରୁ ଗୋଟିକରେ ମହାତ୍ମାଜୀ ସାତଦିନ ବାସ କରିଥିଲେ । ଏହା ତାହାଙ୍କ ପକ୍ଷରେ ବିଚିତ୍ର କଥା ନୁହେ । କାରଣ, ଦକ୍ଷିଣ ଆଫ୍ରିକାରୁ ଆଶ୍ରମରେ ସରଳ ଜୀବନ ଯାପନ କରିବାକୁ ତାହାଙ୍କର ଶ୍ରଦ୍ଧା ବଳିଥିଲା ଓ ତହିଁରେ ସେ ଅଭ୍ୟସ୍ତ ହୋଇ ପଡି-ଥିଲେ । କିନ୍ତୁ ସମ୍ମିଳନୀ ସଙ୍ଗେ ବସିଥିବା ପ୍ରଦର୍ଶନୀରେ ସେ ଯେଉଁ ବକ୍ତୃତା ଦେଇଥିଲେ ତହିଁରେ ତାଙ୍କର ଓଡ଼ିଶା-ପ୍ରୀତି ପ୍ରତି କଥାରେ ପ୍ରତିଧ୍ୱନିତ ହୁଏ ।

ଏହି ଡେଲାଙ୍ଗଠାରେ ପଣ୍ଡିତ ନୀଳକଣ୍ଠ ଦାଶଙ୍କର ମହାତ୍ମାଜୀଙ୍କ ସହିତ ମତଭେଦ ଘଟେ । ଏହି ମତଭେଦ ପାଇଁ ଓଡ଼ିଶାର ବାସ୍ତୁ-

ମଣ୍ଡଳ ଛଡା ଅନ୍ୟ କେହି ଦାୟୀ ନୁହେ । ଓଡ଼ିଶାର ପ୍ରତ୍ୟେକ ସାଧୁ ଅନୁଷ୍ଠାନ ବା କର୍ମ କଳ୍ପିଥିଲି ପର ଅପୁଷ୍ଟ ଯାଏ ଓ ସଙ୍କେ ଫୁଟି ସକାଳେ ଯାଏ । ପଣ୍ଡିତ ନୀଳକଣ୍ଠଙ୍କର ଯୌବନରେ ଯେଉଁ ତ୍ୟାଗ ଓ ସେବା ଦେଖା ଯାଇଥିଲା ସେତେବେଳକୁ ତାହା ନ ଥିଲା କେବଳ କାଷ ବରଣକୁ ସେତେବେଳେ ସେ ତ୍ୟାଗ ମଣୁଥିଲେ ପୁଣି ଅଗାଧ ପାଣ୍ଡିତ୍ୟ ଥାଇ ଆତ୍ମନିୟନ୍ତ୍ରଣର ଅଭାବ ତାହାଙ୍କଠାରେ ଥିଲା । ବିପକ୍ଷ ଦଳ କେବଳ ଭକ୍ତି-ଗୁଣକୁ ଆଶ୍ରୟ କରି ପଣ୍ଡିତ ସହଜରେ ହଟାଇ ଦେଇଥିଲେ ।

କଂଗ୍ରେସକର୍ମୀ ବାବୁ ଗୋବିନ୍ଦ ମିଶ୍ରଙ୍କୁ ଅନେକ ଲୋକ ଜାଣିଥିବେ । ୧୯୧୪ ସାଲଠାରେ ଦଶପଲ୍ଲାର ବିଦ୍ରୋହ ଉତ୍ତରେ ସେ ବଡ଼ ସାହସରେ ଦଶପଲ୍ଲାରୁ ଚାଲି ଆସିଥିଲେ । ନ ଆସିଥିଲେ ଅଳ୍ପ ସମ୍ଭବତଃ ସେ ଧନ ଦଉଲତରେ ଭାସୁ ଥାଆନ୍ତେ । ସେ କଲିକତା ଚାଲି ଯାଇ ସେଠାରେ ମାଟ୍ରିକ୍ ପରୀକ୍ଷାରେ ପାଶ୍ କରିଥିଲେ । ଉପୁରେ ସେ ମହାତ୍ମାଜୀଙ୍କ ସହିତ ଦେଖା କରିଥିଲେ । ଓଡ଼ିଶାର ଗଡ଼ଜାତ କାହାଣୀ ତାହାଙ୍କ ଠାରୁ ମହାତ୍ମାଜୀ ଶୁଣି ଏପରି ମର୍ମାହତ ହୋଇଥିଲେ ଯେ ବହୁକାଳ ପର୍ଯ୍ୟନ୍ତ ତାହାଙ୍କର ମନରୁ ସେ କାହାଣୀ ପାଶୋରି ଯାଇ ନ ଥିଲା । ୧୯୩୫ ସାଲର ଶାସନ-ପଦ୍ଧତିରେ ଦେଶୀୟ ରାଜ୍ୟ ଓ ବ୍ରିଟିଶ ପ୍ରଦେଶର ପ୍ରତିନିଧିମାନଙ୍କୁ ନେଇ କେନ୍ଦ୍ର ବ୍ୟବସ୍ଥାପକ ସଭା ଗଢ଼ା ହେବାର ବ୍ୟବସ୍ଥା ଥିଲା । କିନ୍ତୁ ଅଗ୍ନି ସଙ୍ଗେ ଘୃତର ସଂଯୋଗରେ କି ପରିଣାମ ଘଟିବ ତାହା କେହି ବିଚାର କରି ନ ଥିଲା । ଅଧିକାଂଶ ଦେଶୀୟ ରାଜ୍ୟରେ ଯଥେଚ୍ଛାଚାର ଶାସନ ଚାଲୁଥାଏ । ସେ ରାଜ୍ୟମାନଙ୍କରୁ ପ୍ରତିନିଧିମାନେ କେନ୍ଦ୍ର ସଭାକୁ ଯାଇ ବ୍ରିଟିଶ୍ ପ୍ରଦେଶର ପ୍ରତିନିଧିଙ୍କ ସହିତ ସହଯୋଗିତା କରିବା ଅସମ୍ଭବ

ଥିଲା । ରାଜାମାନେ ଯଦି ନିଜ ନିଜ ରାଜ୍ୟରେ ଗଣତନ୍ତ୍ର ଶାସନ ପ୍ରତିଷ୍ଠିତ କରି ଥାଆନ୍ତେ ତେବେ ଅପତ୍ତି ନ ଥିଲା ! ଏହି ଗଣତନ୍ତ୍ର ଶାସନର ପ୍ରତିଷ୍ଠା ପାଇଁ ଦେଶୀୟ ରାଜ୍ୟମାନଙ୍କରେ ଆନ୍ଦୋଳନର ସୂତ୍ରପାତ ହେଲା । ଓଡ଼ିଶାର ଦେଶୀୟ-ରାଜ୍ୟର ଆନ୍ଦୋଳନରେ ବାବୁ ଶାରଙ୍ଗଧର ଦାସ ଓ କୈଳାସ ଚନ୍ଦ୍ର ମହାନ୍ତିଙ୍କ ନାମ ବିଶେଷ ପରିମାଣରେ ଉଲ୍ଲେଖ ଯୋଗ୍ୟ । ଏଣେ ମୋଗଲବନ୍ଦୀରେ କଂଗ୍ରେସ ମନ୍ତ୍ରୀ ରହିବାରୁ ଗଡ଼ଜାତର ଆନ୍ଦୋଳନ ପକ୍ଷରେ ବିଶେଷ ସୁବିଧା-ଜନକ ହୋଇଥିଲା । ସେତେବେଳେ ତାଳଚେର ଓ ଢେଙ୍କାନାଳରେ ଅତ୍ୟନ୍ତ ଅତ୍ୟାଚାର ହୋଇ ଥିଲା । ଶ୍ରୀଯୁକ୍ତ ହରେକୃଷ୍ଣ ମହତାବଙ୍କୁ ଶାନ୍ତି ସ୍ଥାପନର ନାମ କହି ଢେଙ୍କାନାଳର ରଜା ଅନ୍ୟ ଉଦ୍ଦେଶ୍ୟରେ ଡାକି ନେଇଥିଲେ । ମହତାବ ମହାଶୟ ଫେରିଲା ଉତ୍ତାରେ ସେଠାରେ ଯେଉଁ ପାଶବିକ ଅତ୍ୟାଚାର ହେଲା ତାହା ବର୍ଣ୍ଣନାତୀତ । ଏହି ଘଟଣା ମହାତ୍ମାଜୀଙ୍କ କାନରେ ଯେତେବେଳେ ବିଶ୍ୱନାଥ ବାବୁ ଓ ସାରଙ୍ଗଧର ବାବୁ ପକାଇଥିଲେ ସେତେବେଳେ ମହାତ୍ମାଜୀ ଯାହା କହିଥିଲେ ତହିଁରେ ମହାତ୍ମାଜୀଙ୍କର ମର୍ମବେଦନା ମଧ୍ୟ ସ୍ପଷ୍ଟରୂପେ ପ୍ରକାଶ ପାଇଥିଲା । ରାଜାଙ୍କ ପାର୍ଶ୍ୱଚରମାନେ କରିଥିବା ପାଶବିକ ଅତ୍ୟାଚାରର ପ୍ରତିକାର ପାଇଁ ସେ ସରକାରଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ, ତହିଁରେ ମଧ୍ୟ କିଛି ଫଳ ହୋଇଥିଲା । ସେ ସତ୍ୟ-ବାଦୀ ବୋଲି ଜାଣି ସରକାର ମଧ୍ୟ ତାହାଙ୍କ କଥାକୁ ବିଶ୍ୱାସ କରୁଥିବାର ଏଥିରୁ ପ୍ରମାଣିତ ହୁଏ । ସରକାର ତାହାଙ୍କୁ ବାହାରେ ଶତ୍ରୁ ବୋଲି ମଣିଲେ ମଧ୍ୟ ଅନ୍ତରରେ ଭକ୍ତି କରୁଥିଲେ । ଯେଉଁ ମହାପୁରୁଷ ନିଜକୁ ଶତ୍ରୁ ମଣୁଥିବା ଲୋକର ହୃଦୟରେ ଆପଣା ପ୍ରତି ଭକ୍ତି ଜାଗରିତ କରାଇ ପାରେ ସେ ଏକା ଅବତାର-ପୁରୁଷ ।

୧୯୩୭ ସାଲର ଏପ୍ରିଲ୍ ୧ ତାରିଖରେ ନୂତନ ଶାସନ-ତନ୍ତ୍ର ଭାରତରେ ପ୍ରବର୍ତ୍ତିତ ହେଲା । ସଙ୍ଗେ ସଙ୍ଗେ ରାଜନୈତିକ ବନ୍ଦୀ-ମାନଙ୍କ ମୁକ୍ତି ପାଇଁ ତୁମୁଳ ଆନ୍ଦୋଳନ ଉପସ୍ଥିତ ହେଲା । ଏଥିରେ ମହାତ୍ମାଜୀ ମଧ୍ୟ ଅଗ୍ରଣୀ ହୋଇଥିଲେ । ବନ୍ଦୀମାନଙ୍କ ମୁକ୍ତି ପାଇଁ ସେ ବଙ୍ଗଳାର ଲାଟସାହେବଙ୍କ ସଙ୍ଗେ ସାକ୍ଷାତ୍ କରି ତାହାଙ୍କୁ ଅନୁରୋଧ କରୁଥିଲେ । କାରାଗୃହରେ ରାଜନୈତିକ ବନ୍ଦୀମାନଙ୍କ ସହିତ ସାକ୍ଷାତ ମଧ୍ୟ କରିଥିଲେ । ଏହାର ଫଳରେ ବଙ୍ଗଳାର ସରକାର ୧୧୦୭ ଜଣ ରାଜନୈତିକ ବନ୍ଦୀଙ୍କୁ ମୁକ୍ତି ପ୍ରଦାନ କରିଥିଲେ । ଏହାପରି ଆଜୀବନ ପରର ମଙ୍ଗଳ ପାଇଁ ସେ କର୍ମ କରି ପ୍ରତ୍ୟେକ କର୍ମରେ ପ୍ରାୟ ସଫଳକାମ ହେଉଥିଲେ । ସାଧାରଣ ମନୁଷ୍ୟ ପକ୍ଷରେ ଅସମ୍ଭବ କାର୍ଯ୍ୟ କରି ସଫଳକାମ ହେବା ମହାପୁରୁଷର ପ୍ରଧାନ ଲକ୍ଷଣ ।

୧୯୩୯ ସାଲର ମାର୍ଚ୍ଚ ମାସରେ ମହାତ୍ମାଜୀ ଦେଶୀୟ ରାଜ୍ୟ ରାଜକୋଟ ପାଇଁ ଅନଶନ କରିଥିଲେ । ସେଠାରେ ପ୍ରଜା-ଆନ୍ଦୋଳନ ଲାଗିଥିଲା । ଶେଷରେ ଆନ୍ଦୋଳନକାରୀଙ୍କ ପକ୍ଷରୁ ସର୍ଦ୍ଦାର ବଲ୍ଲଭଭାଇ ପଟେଲ୍ ଓ ଶାସକ ଠାକୁର ସାହେବଙ୍କ ମଧ୍ୟରେ ଏକ ଚୁକ୍ତି ହୋଇଥିଲା । ଠାକୁର ସାହେବ ଚୁକ୍ତିଭଙ୍ଗ କରିବାରୁ ମହାତ୍ମାଜୀ ଅନଶନ କରି ଜୟୀ ହୋଇଥିଲେ ।

---

**ମହାତ୍ମା-ଜୀବନ**

( ଦ୍ୱିତୀୟ ଭାଗ )

୧୯୩୯ ସାଲ ସେପ୍ଟେମ୍ବର ମାସରେ ଇଉରୋପରେ ଯୁଦ୍ଧ ଘୋଷଣା କରା ଯାଇଥିଲା । ସେତେବେଳେ ପ୍ରଦେଶମାନଙ୍କର ଶାସନ ଭାର ଗ୍ରହଣ କରିଥିବା କଂଗ୍ରେସ ମନ୍ତ୍ରୀମାନଙ୍କର କର୍ତ୍ତବ୍ୟ ନିରୂପଣ କରିବା ବଡ଼ ବ୍ୟାପାର ଥିଲା । ଶାସନ କାର୍ଯ୍ୟରେ ଯେଉଁ ସରକାରଙ୍କ ସହିତ କଂଗ୍ରେସ ସହଯୋଗିତା କରୁଥିଲା, ଯୁଦ୍ଧ-ବିପଦରେ ସେହି ସରକାରଙ୍କୁ କଂଗ୍ରେସ ସାହାଯ୍ୟ ନ କରିବା ନିତାନ୍ତ ଅସଙ୍ଗତ କଥା । କିନ୍ତୁ ଅଳ୍ପ-ସନ୍ତୋଷରେ କଂଗ୍ରେସ ଶାସନ କାର୍ଯ୍ୟରେ ସହଯୋଗିତା କରୁ ନ ଥିଲା । ପ୍ରଥମ ମହାସମରରେ ଭାରତ ବ୍ରିଟିଶ୍ ସରକାରଙ୍କୁ ସାହାଯ୍ୟ କରୁଥିଲା ଓ ବ୍ରିଟିଶ୍ ସରକାର ମଧ୍ୟ ହାତ ଗୁଞ୍ଜ ଦେବେ ବୋଲି କହୁଥିଲେ । କିନ୍ତୁ ଯୁଦ୍ଧ ସରିବା ସଙ୍ଗେ ସଙ୍ଗେ ରାଓଲଟ ଆକ୍ଟର ତାଣ୍ଡବ ନୃତ୍ୟ ସରକାର ଭାରତରେ ଦେଖାଇ ଥିଲେ । ଏଣୁ ଏଥର ଯୁଦ୍ଧରେ ସରକାରଙ୍କୁ ସାହାଯ୍ୟ କରିବା ପାଇଁ କାହାର ଆଗ୍ରହ ନ ଥିଲା । ଯୁଦ୍ଧରେ ସରକାରଙ୍କର କି ଲକ୍ଷ୍ୟ ଅଛି, ତାହା ଜାଣିଲେ ଆମେ ଯୁଦ୍ଧ ପାଇଁ ସାହାଯ୍ୟ କରିବା ଉଚିତ କି ନା, ଏହା ବିଚାର କରିପାରିବୁ ବୋଲି କଂଗ୍ରେସ ବ୍ରିଟିଶ ସରକାରଙ୍କୁ କହିଲା । କହିବା ବାହୁଲ୍ୟ ଯେ, ମହାତ୍ମାଜୀଙ୍କ ପରାମର୍ଶ ଅନୁସାରେ ବ୍ରିଟିଶ୍ ସରକାରଙ୍କୁ କଂଗ୍ରେସ ଏପରି କହି ପାରିଥିଲା । କିନ୍ତୁ ବ୍ରିଟିଶ୍ ସରକାର ଯୁଦ୍ଧର କୌଣସି ଲକ୍ଷ୍ୟ ଜଣାଇଲେ ନାହିଁ । ଏଣୁ ୧୯୩୯ ସାଲର ଅକ୍ଟୋବର ମାସର ୧୦ ତାରିଖରେ ମହାତ୍ମାଜୀଙ୍କ ସମର୍ଥନ ଅନୁସାରେ କଂଗ୍ରେସ କାର୍ଯ୍ୟନିର୍ବାହକ ସଭା ପଦତ୍ୟାଗ କରିବା ପାଇଁ କଂଗ୍ରେସୀ ମନ୍ତ୍ରୀମାନଙ୍କୁ ନିର୍ଦ୍ଦେଶ ଦେଲେ ।

ହିଂସାପ୍ରିତା କାମ ସଭ୍ୟଯୁଗରେ ଚଳେ ନାହିଁ । ଜୋର ଯାର ମୂଲକ ତାର ନୀତି ଧରି ଏକ ଦେଶ ଅନ୍ୟ ଦେଶକୁ ଆକ୍ରମଣ କରିପାରେ ନାହିଁ । ଏକ ଦେଶ ଅନ୍ୟ ଦେଶ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିବା ପୂର୍ବରୁ ପ୍ରତି ପକ୍ଷର ଅନ୍ୟାୟାଚରଣ ପ୍ରମାଣ କରିବାକୁ ଦରକାର ହୋଇଥାଏ । ତାହାର ପ୍ରତିକାର ପାଇଁ ଯୁଦ୍ଧ ଘୋଷଣା କରାଗଲା ବୋଲି ଛଳନା କରାଯାଏ । ବିନା କାରଣରେ କାହାର ସଙ୍ଗରେ କଳହ କରିବା ମନୁଷ୍ୟର ପ୍ରକୃତି ନୁହେଁ ବୋଲି ଆମେ ନିଜ ଜୀବନରେ ଉପଲବ୍ଧି କରୁଁ । କିନ୍ତୁ କାହାର ସଙ୍ଗେ କଳହରେ ବ୍ୟାପୃତ ହେଲବେଳେ କାରଣଟିଏ ଖୋଜି ବାହାର କରିବାକୁ ପଡ଼େ । ବ୍ୟକ୍ତିଗତ ଜୀବନରେ ଯେପରି ଘଟେ, ଜାତି ଜୀବନରେ ସେପରି ଘଟେ । ପ୍ରକୃତିର ଏକ ନିୟମ ସବୁ କ୍ଷେତ୍ରରେ ସମାନ ପରିମାଣରେ କାର୍ଯ୍ୟ କରିଥାଏ । ସେହି ନିୟମ ଅନୁସାରେ କାହାର ବ୍ୟକ୍ତିଗତ ଜୀବନ ବା ସାଧାରଣ ଅନୁଷ୍ଠାନ ପରିଚାଳିତ ନୋହିଲେ ତାହାର ପତନ ଘଟେ । ସେହି ନିୟମ ଅନୁସାରେ ମହାତ୍ମାଜୀ କଂଗ୍ରେସ ଅନୁଷ୍ଠାନକୁ ପରିଚାଳନା କରୁଥିଲେ । ଯୁଦ୍ଧବେଳେ ସାହାଯ୍ୟ ନ କଲେ ଇଂରେଜ ସରକାରଙ୍କର କଂଗ୍ରେସ ପ୍ରତିପକ୍ଷ ହେଲା । ପ୍ରତିପକ୍ଷ ଶାସନ କାର୍ଯ୍ୟରେ ସରକାରଙ୍କ ସଙ୍ଗେ ସହଯୋଗିତା କରିବା ଅସଙ୍ଗତ । ଆମ ଦେଶର ରାଜନୀତିଜ୍ଞମାନେ ଏହି ନୀତିର ମର୍ମ ବୁଝନ୍ତି । କିନ୍ତୁ ସାଧାରଣ ଲୋକେ ବୁଝି ନ ପାରି ସରକାରଙ୍କ ସଙ୍ଗରେ ସହଯୋଗ କରୁ କରୁ ସୁବିଧା ଉଣ୍ଡି ତାହାଙ୍କର ବିରୁଦ୍ଧାଚରଣ କରିବା ଉଚିତ ବୋଲି ସେମାନେ ମତ ଦେଇ ଥାଆନ୍ତି ।

ଏହି ବର୍ଷ ମହାତ୍ମାଜୀ ଜିନା ଓ ପଣ୍ଡିତ ନେହରୁଙ୍କ ସଙ୍ଗରେ ନଭେମ୍ବର ମାସର ୨ ତାରିଖରେ ହିନ୍ଦୁ ମୁସଲମାନ ଐକ୍ୟ ସମ୍ପର୍କରେ

ସଭାରେ ଅନେକ କଥା ଆଲୋଚନା କରିଥିଲେ । ୪ ତାରିଖରେ ଗୋଟିଏ ବକ୍ତୃତାରେ କହିଥିଲେ ଯେ—ଜିନ୍ନାଙ୍କୁ ତୁଷ୍ଟ କରିବା ଅସମ୍ଭବ । ଏହା କହିଥିଲେ ମଧ୍ୟ ଐକ୍ୟ ସାଧନ ସମ୍ବନ୍ଧରେ ସେ ହତାଶ ହୋଇ ନ ଥିଲେ ଓ ସେ ସମ୍ବନ୍ଧରେ ଜୀବନର ଶେଷ ଦଶା ପର୍ଯ୍ୟନ୍ତ ସେ ଯତ୍ନ କରୁଥିଲେ । ଅଳ୍ପ କିଛିକାଳ ନଶ୍ୱର ଦେହ ବହି ବଞ୍ଚି ରହିଥିଲେ ତାହାଙ୍କ ସ୍ୱପ୍ନ ବାସ୍ତବରେ ପରିଣତ ହୋଇ ପାରି ନ ଥାନ୍ତା ବୋଲି କେହି କହି ନ ପାରେ । ନଶ୍ୱର ଦେହ ତ୍ୟାଗ କଲେ ମଧ୍ୟ ତାହାଙ୍କ ଅବିନାଶୀ ଆତ୍ମା ଐକ୍ୟ ସ୍ଥାପନର ଯତ୍ନରୁ ବିରତ ହୋଇ ନାହିଁ ଓ ଅଳ୍ପଦିନ ମଧ୍ୟରେ ତାହାଙ୍କର ଚେଷ୍ଟା ଫଳବତୀ ହେବ ବୋଲି ଆମେ ମଧ୍ୟ ଆଶା କରୁଁ ।

୧୯୪୦ ସାଲର ଫେବ୍ରୁଆରୀ ୨ ତାରିଖରେ ମହାତ୍ମାଜୀଙ୍କର କବୀନ୍ଦ୍ର ରବୀନ୍ଦ୍ରନାଥଙ୍କ ସଙ୍ଗେ ଶାନ୍ତି-ନିକେତନରେ ସାକ୍ଷାତ୍ ହୋଇଥିଲା । ପରସ୍ପରର ଅଗାଧ ସ୍ନେହ ଓ ଭକ୍ତି ଥିଲା । କବୀନ୍ଦ୍ର ଯେଉଁ ସତ୍ୟକୁ ଅନ୍ତରରେ ଉପଲବ୍ଧି କରୁଥିଲେ ଭାଷାରେ ତାହାକୁ ମୂର୍ତ୍ତିମନ୍ତ କରୁଥିଲେ । ମହାତ୍ମାଜୀ ଅନ୍ତରର ସତ୍ୟକୁ କର୍ମରେ ମୂର୍ତ୍ତିମନ୍ତ କରୁଥିଲେ । ଏଣୁ ଉଭୟେ ସତ୍ୟର ସେବକ ଥିଲେ । ପରସ୍ପର ଘନିଷ୍ଠତା ଜନ୍ମିବା ସ୍ୱାଭାବିକ । ହିଜଲୀର କାରାଗୃହରେ ରାଜବନ୍ଦୀମାନଙ୍କ ଉପରେ ୧୯୩୧ ସାଲରେ କାରାରକ୍ଷୀ କର୍ତ୍ତୃପକ୍ଷ ଗୁଳି ବର୍ଷଣ କରିଥିଲେ । କବୀନ୍ଦ୍ର ଏହି ପାଶବିକ କାର୍ଯ୍ୟର ଘୋର ନିନ୍ଦା କରିଥିଲେ । ସେତେବେଳକୁ ମହାତ୍ମାଜୀ ବିଲାତରେ ଥିଲେ । କବୀନ୍ଦ୍ର ନିନ୍ଦା କରିଥିବାରୁ ପାଶବିକ କାଣ୍ଡର ଭୟାବହ ଚିତ୍ର ତାହାଙ୍କ ହୃଦୟରେ ଅନାୟାସରେ ଅଙ୍କିତ ହୋଇଗଲା । ସେଥିପାଇଁ ସେ କହିଥିଲେ ଯେ, ଯେଉଁ କାଣ୍ଡ ନିର୍ଜନତା ଭେଦ କରି କବୀନ୍ଦ୍ରଙ୍କ

ଶାନ୍ତି ଭଙ୍ଗ କରି ପାରୁଅଛି ତାହାର ଉପ୍ଯୁକ୍ତତା ସହଜରେ ଅନୁମେୟ । କବୀନ୍ଦ୍ରଙ୍କ ଶାନ୍ତି-ନିକେତନର ବିଶ୍ୱ-ଭାରତୀ ଅନୁଷ୍ଠାନର ଆର୍ଥିକ ସଙ୍କଟ ଦୂର କରିବା ପାଇଁ ଦେଶବାସୀଙ୍କ ପ୍ରତି ଗୋଟିଏ ନିବେଦନ ମଧ୍ୟ ସେ ସମ୍ବାଦ-ପତ୍ରମାନଙ୍କରେ ପ୍ରକାଶ କରିଥିଲେ । ମହାତ୍ମାଜୀ କବି ନ ଥିଲେ । କିନ୍ତୁ ସତ୍ୟର ସେବକ ହୋଇଥିବାରୁ କବିର ଗୁଣ ବୁଝି ପାରିଥିଲେ ।

୧୯୪୦ ସାଲରେ ମାର୍ଚ୍ଚ ମାସରେ ରାମଗଡ଼ ଠାରେ କଂଗ୍ରେସର ବୈଠକ ହୋଇଥିଲା । ସେଠାରେ ୬ ତାରିଖରେ କଂଗ୍ରେସରେ ମହାତ୍ମାଜୀ ଗୋଟିଏ ବକ୍ତୃତା ଦେଇଥିଲେ । ୩୦ ତାରିଖରେ ହରିଜନ ପତ୍ରିକାରେ ଗୋଟିଏ ପ୍ରବନ୍ଧ ପ୍ରକାଶ କରିଥିଲେ । ଭାରତର ପ୍ରତ୍ୟେକ କଂଗ୍ରେସ କମିଟିକୁ ସତ୍ୟାଗ୍ରହ-କମିଟିରେ ପରିଣତ କରିବା ପାଇଁ ଉକ୍ତ ପ୍ରବନ୍ଧରେ ସେ ନିର୍ଦ୍ଦେଶ ଦେଇଥିଲେ । ସେଥି ସଙ୍ଗେ ସଙ୍ଗେ କେତେଗୁଡ଼ିଏ ସର୍ତ୍ତ ପାଳିବା ପାଇଁ ମଧ୍ୟ ସେ ନିର୍ଦ୍ଧାରଣ କରିଥିଲେ । ପ୍ରଥମ ସର୍ତ୍ତ- ଏହି ଯେ, ଯେଉଁମାନେ ସତ୍ୟାଗ୍ରହୀ ହେବେ ସେମାନେ ପୂର୍ଣ୍ଣମାତ୍ରାରେ ଅହିଂସା ପରାୟଣ ହେବେ । ଦ୍ୱିତୀୟରେ ସତ୍ୟାଗ୍ରହୀ-ମାନେ ଚରଖାରେ ସୂତା କାଟିବେ ଏବଂ ତୃତୀୟରେ ଜେଲଦଣ୍ଡ ଭୋଗିବା ପାଇଁ ସତ୍ୟାଗ୍ରହୀ ପ୍ରସ୍ତୁତ ରହିବ ।

କଂଗ୍ରେସର ଓ୍ୱାର୍ଦ୍ଧା ଓ ଦିଲ୍ଲୀ ପ୍ରସ୍ତାବ ନେଇ କଂଗ୍ରେସର କାର୍ଯ୍ୟନିର୍ବାହକ ସମିତିର ଅନେକ ସଭ୍ୟଙ୍କର ୧୯୪୦ ସାଲରେ ମହାତ୍ମାଜୀଙ୍କ ସହିତ ମତଭେଦ ଘଟିଥିଲା । ବ୍ରିଟିଶ ସରକାର କହୁଥିଲେ ଯେ, କଂଗ୍ରେସ ଅହିଂସା ନୀତି ଗ୍ରହଣ କରିଥିବାରୁ ଅନ୍ୟ ଜାତି ଆକ୍ରମଣ କଲେ କଂଗ୍ରେସ ଭାରତକୁ ରକ୍ଷା କରି ପାରିବ ନାହିଁ । ଏଣୁ ରାଜଗୋପାଲାଚାରୀ ପ୍ରମୁଖ କେତେକ ନେତା

କଂଗ୍ରେସର ନୂତନ ନୀତି ନିର୍ଦ୍ଧାରଣ କଲେ । ଏହି ନୀତି ଅନୁସାରେ ଆପଣା ଦେଶ ମଧ୍ୟରେ ଶାନ୍ତି ରକ୍ଷା ପାଇଁ ଅହିଂସା-ନୀତି ଅବଲମ୍ବନ କରିବାକୁ ହେବ ଓ ବହିରାକ୍ରମଣ ବେଳେ ଅସ୍ତ୍ର ଧାରଣ କରିବାକୁ ହେବ । ଏପରି ଅସାମଞ୍ଜସ୍ୟ ନୀତି ପସନ୍ଦ ନ କରିବାରୁ ମହାତ୍ମାଜୀଙ୍କୁ ଜୁନ ମାସର ୨୧ ତାରିଖରେ କଂଗ୍ରେସରୁ ଅବ୍ୟାହତ ଦିଆ ହୋଇଥିଲା । ମହାତ୍ମାଜୀ ସ୍ୱାଧୀନ ଭାବରେ ନିଜର ମହାନ୍ ଆଦର୍ଶ ଅହିଂସା-ନୀତିରେ ଅନୁସରଣ କରିବା ପାଇଁ କଂଗ୍ରେସ ମଧ୍ୟ ସୁଯୋଗ ଦେଇଥିଲା ।

ଯେତେବେଳେ ମହାତ୍ମାଜୀ କଂଗ୍ରେସରୁ ଅବ୍ୟାହତ ପାଇଲେ ସେତେବେଳକୁ ଇଉରୋପର ଯୁଦ୍ଧରେ ଫ୍ରାନ୍ସର ପତନ ଘଟିଥିଲା । ଜାପାନ ଏସିଆ ମହାଦେଶରେ ବ୍ରିଟିଶ ସାମ୍ରାଜ୍ୟ ଆକ୍ରମଣ କରିବାର ଆଶଙ୍କା ମଧ୍ୟ ଥାଏ । ଏଣୁ ଯୁଦ୍ଧକୁ ଭାରତର ସାହାଯ୍ୟ ବ୍ରିଟିଶ ସରକାରଙ୍କର ଅତ୍ୟନ୍ତ ପ୍ରୟୋଜନୀୟ ହୋଇଥାଏ ଓ ସାହାଯ୍ୟ ମାଗୁଥାଆନ୍ତି । କିନ୍ତୁ ଭାରତର ସ୍ୱାଧୀନତାର ପ୍ରଶ୍ନ ଉଠିଲେ ଯୁଦ୍ଧ ଲାଗିଥିବା ବେଳେ ତାହା ବିଚାର କରିବାକୁ ଅବସର ନାହିଁ ବୋଲି କହିଲେ । ଜାପାନ ଆକ୍ରମଣର ଆଶଙ୍କା ଦେଖାଗଲାବେଳେ ଅହିଂସା-ନୀତିରେ ବହିରାକ୍ରମଣ ପ୍ରତିରୋଧ କରି ପାରିବ ନାହିଁ ବୋଲି କହିଲେ । ତେଣୁ କଂଗ୍ରେସ ନୀତି ବଦଳାଇଲା । ମହାତ୍ମାଜୀ ଅନ୍ୟ ଅପରର ଜବାବ ଦେଇଥିଲେ, "ଯୁଦ୍ଧବେଳେ ଭାରତରର ସ୍ୱାଧୀନତା ମାଗି ସରକାରଙ୍କୁ ହଇରାଣ କରିବାକୁ ଆମର ଆଦୌ ଇଚ୍ଛା ନାହିଁ, ଯୁଦ୍ଧ ପରେ କେତେ ବର୍ଷରେ ଭାରତକୁ ସ୍ୱାଧୀନତା ଦିଆଯିବ ସେତିକି କହିଲେ ଯୁଦ୍ଧକୁ ସାହାଯ୍ୟ କରିବା ପାଇଁ ଆମେ ପ୍ରସ୍ତୁତ ଅଛୁଁ ।" ସ୍ୱାଧୀନତା ଦେବା ପାଇଁ ଇଚ୍ଛା ନ ଥିବାରୁ କେତେବର୍ଷ ଉତ୍ତାରେ

ତେବେ ତାହା ସରକାର କହନ୍ତୁ ନାହିଁ, ଦେଶର ନେତାମାନେ ସାହାଯ୍ୟ କରିବା ପାଇଁ ପ୍ରସ୍ତୁତ ନୋହିଲେ ପେଟ-ବିକଳରେ ଯେଉଁ ଭାରତୀୟ ଯୁଦ୍ଧରେ ଯୋଗ ଦେବ, ସେ ଜୀବନ ପଣ କରି ଯୁଦ୍ଧ କରିବ ନାହିଁ. ଏ କଥା ବ୍ରିଟିଶ ସରକାରଙ୍କୁ ଜଣା ଥାଏ। ଏଣୁ ୧୯୪୦ ସାଲର ଅଗଷ୍ଟ ମାସରେ ବଡ଼ଲାଟଙ୍କ କାର୍ଯ୍ୟନିର୍ବାହକ ଶାସନ-ସଭାରେ କେତେ ଜଣ ଭାରତୀୟଙ୍କୁ ସ୍ଥାନ ଦେଇ ଭାରତୀୟମାନଙ୍କ ମନ ଭୁଲାଇବା ପାଇଁ ସରକାର ଏକ ଘୋଷଣା କରିଥିଲେ ! ପୂର୍ବୋକ୍ତ ଦିଲ୍ଲୀ ପ୍ରସ୍ତାବରେ କଂଗ୍ରେସ ଘୋଷଣା କରିଥିଲା ଯେ, ବ୍ରିଟିଶ ସରକାର ପୂର୍ଣ୍ଣ ସ୍ୱାଧୀନତାର ଯଦି ପ୍ରତିଶ୍ରୁତି ଦିଅନ୍ତି ଓ ତଦନୁଯାୟୀ ବ୍ୟବସ୍ଥା କରନ୍ତି ତେବେ କଂଗ୍ରେସ କେନ୍ଦ୍ରରେ ଓ ପ୍ରଦେଶରେ ଦେଶ-ରକ୍ଷାର ଦାୟିତ୍ୱ ଗ୍ରହଣ କରିବ ଏବଂ ଦେଶର ଆଭ୍ୟନ୍ତରୀଣ ଶାନ୍ତିର ବ୍ୟବସ୍ଥା କରିବ। ଜୁଲାଇ ମାସର ୨୮ ତାରିଖ ପୁନାରେ ନିଖିଳ ଭାରତ ରାଷ୍ଟ୍ରୀୟ ସମିତିର ଅଧିବେଶନରେ ଦିଲ୍ଲୀର ଉକ୍ତ ଘୋଷଣା ଅନୁମୋଦିତ ହୋଇଥିଲା। କିନ୍ତୁ ସରକାରଙ୍କ ଅଗଷ୍ଟ ଘୋଷଣାରେ ତାହାଙ୍କ ମନୋଭାବ ସ୍ପଷ୍ଟରୂପେ ପ୍ରକାଶ ପାଇବାରୁ ସେପ୍ଟେମ୍ବର ମାସର ୧୫ ତାରିଖ ବୋମ୍ବେଇରେ ନିଖିଳ ଭାରତ ରାଷ୍ଟ୍ର ସମିତିର ଅଧିବେଶନରେ କଂଗ୍ରେସର ଦିଲ୍ଲୀ ଘୋଷଣାକୁ ସମାଧିସ୍ଥ କରାଗଲା। ଏଣୁ ମହାତ୍ମାଜୀ ପୁଣି କଂଗ୍ରେସର ନେତୃତ୍ୱ ଗ୍ରହଣ କଲେ।

୧୯୪୦ ସାଲର ଅକ୍ଟୋବର ୧୩ ତାରିଖରେ କଂଗ୍ରେସର କାର୍ଯ୍ୟନିର୍ବାହକ ସମିତିର ବୈଠକ ୱାର୍ଦ୍ଧାରେ ବସିଥିଲା। ସେତେବେଳେ ସରକାର ଭାରତରୁ ଯୁଦ୍ଧ ପାଇଁ ଅର୍ଥ ଓ ସୈନ୍ୟ ସଂଗ୍ରହ କରୁଥିଲେ। ଏହାର ବିରୁଦ୍ଧରେ ପ୍ରଚାର କାର୍ଯ୍ୟ ଚଳାଇବାକୁ ସତ୍ୟାଗ୍ରହ ଚଳାଇବାର ସିଦ୍ଧାନ୍ତ କଂଗ୍ରେସରେ ହେଲା। କିନ୍ତୁ ଏହି

ସତ୍ୟାଗ୍ରହଙ୍କୁ ବ୍ୟାପକ ନ କରି ବ୍ୟକ୍ତିଗତ କରିବାକୁ ମହାତ୍ମାଜୀ ନିର୍ଦ୍ଦେଶ ଦେଲେ । ଜଣେ ଜଣେ ସତ୍ୟାଗ୍ରହୀ ବୁଲି ବୁଲି ଯୁଦ୍ଧକୁ କୌଣସିପ୍ରକାର ସାହାଯ୍ୟ ନ ଦେବାପାଇଁ ପ୍ରଚାର କଲେ । ସରକାର ଏହାକୁ ମଧ ବେ-ଆଇନ ଘୋଷଣା କରି ପ୍ରଚାରକମାନଙ୍କୁ ବନ୍ଦୀ କରିଥିଲେ । ମହାତ୍ମାଜୀ ନିଜେ ଯାହାକୁ ବାଛୁଥିଲେ ସେ ଏପରି ପ୍ରଚାର କାର୍ଯ୍ୟ କରି ବନ୍ଦୀ ହେଉଥିଲା । ପ୍ରଥମେ ସେ ଶ୍ରୀଯୁକ୍ତ ଭିନୋବା ଭାବେଙ୍କୁ ବାଛିଥିଲେ । ଏହି ଭିନୋବା ଭାବେ ୧୭ ତାରିଖରେ ଯୁଦ୍ଧ ବିରୋଧୀ ବକ୍ତୃତା ଦେଇ କାରା ଦଣ୍ଡରେ ଦଣ୍ଡିତ ହୋଇଥିଲେ । ତାହାଙ୍କ ପଛେ ପଛେ କଂଗ୍ରେସର ଅନେକ ସଦସ୍ୟ ଯୁଦ୍ଧବିରୋଧୀ ବକ୍ତୃତା ଦେଇ ଦଣ୍ଡିତ ହେଲେ । ଏଣୁ ଭାରତର କେନ୍ଦ୍ର ଓ ପ୍ରାଦେଶିକ ବ୍ୟବସ୍ଥାପକ ସଭାର ସଦସ୍ୟମାନେ ଯୁଦ୍ଧ ବିରୁଦ୍ଧରେ ନିଜ ନିଜ ଅଭିମତ ପ୍ରକାଶ କରିଥିଲେ । ଏହାଦ୍ୱାରା ସମଗ୍ର ବିଶ୍ୱ ନିକଟରେ ଭାରତ ଯୁଦ୍ଧ ବିରୋଧୀ ବୋଲି ପ୍ରମାଣିତ ହୁଏ ।

୧୯୪୧ ସାଲର ଡିସେମ୍ବର ମାସରେ ଆମେରିକା ଓ ବ୍ରିଟିଶ ସରକାରଙ୍କ ବିରୁଦ୍ଧରେ ଜାପାନ ଯୁଦ୍ଧ ଘୋଷଣା କଲା । ଏଣୁ ଭାରତ-ସରକାର ବନ୍ଦୀ ସତ୍ୟାଗ୍ରହୀମାନଙ୍କୁ ମୁକ୍ତି ଦେଲେ । ଡିସେମ୍ବର ମାସର ୩୦ ତାରିଖରେ ବାର୍ଦ୍ଦୋଲୀଠାରେ କଂଗ୍ରେସର କାର୍ଯ୍ୟ-ନିର୍ବାହକ ସମିତିର ଅଧିବେଶନ ବସିଥିଲା । ତହିଁରେ ମହାତ୍ମାଜୀଙ୍କୁ କଂଗ୍ରେସର ନେତୃତ୍ୱ ଅର୍ପଣ କରାଗଲା ।

୧୯୪୨ ସାଲ ଭାରତର ଇତିହାସରେ ଗୋଟିଏ ମହାସ୍ମରଣୀୟ ବର୍ଷ । ଇଉରୋପର ରଣ ଷେତ୍ରରେ ଜର୍ମାନୀ ସାଫଲ୍ୟମଣ୍ଡିତ ହେବା ସଙ୍ଗେ ସଙ୍ଗେ ଜାପାନ ସିଙ୍ଗାପୁର ଦଖଲ କରି ବର୍ମା ଭିତରକୁ ବିଜୟ ଅଭିଯାନ ଚଳାଇଥିଲା । ବ୍ରିଟିଶ ଶକ୍ତି ସେତେବେଳେ ଟଳଟଳ

ଅବସ୍ଥାରେ ପଡ଼ିଥିଲା । ଜାପାନ ପ୍ରଶାନ୍ତ ମହାସାଗରର ସମଗ୍ର ନୌ ଘାଟି କରତଳଗତ କରିଥିଲା । ବ୍ରିଟିଶ୍ ସରକାର ପ୍ରମାଦ ଗଣିଲେ । ଭାରତକୁ ରକ୍ଷା ନ କଲେ ତାହାଙ୍କ ଦେଶର ଭୋଗ-ବିଳାସର ନିଦର୍ଶନ ରହିବ ନାହିଁ ବୋଲି ସେ ବୁଝି ପାରିଥିଲେ ଏଣୁ ଯୁଦ୍ଧବେଳେ ଭାରତରୁ ଇଂରେଜ-ବିଦ୍ୱେଷ ବିଦୂରିତ ନୋହିଲେ ଭାରତ-ରକ୍ଷା କଠିନ ମଣି ଧୂର୍ତ୍ତ ନୀତି ଅବଲମ୍ବନ କରିବାକୁ ବାଧ୍ୟ ହୋଇଥିଲେ । ଭାରତୀୟମାନଙ୍କ ଚକ୍ଷୁରେ ଧୂଳି ପକାଇବା ନିମନ୍ତେ ଷ୍ଟାଫୋର୍ଡ଼ କ୍ରିପ୍ସ ସାହେବଙ୍କ ହାତରେ ଶାସନ-ସଂସ୍କାରର କେତେ-ଗୁଡ଼ିଏ ପ୍ରସ୍ତାବ ପଠାଇଲେ । ଏଥିପୂର୍ବରୁ ଇଂଲଣ୍ଡର ପ୍ରଧାନ ମନ୍ତ୍ରୀ ଚର୍ଚ୍ଚିଲ ଓ ଆମେରିକା ଯୁକ୍ତରାଷ୍ଟ୍ରର ସଭାପତି ମିଳି ଆଟଲାଣ୍ଟିକ ମହାସାଗରର ଜାହାଜରେ ରହି ଆଟଲାଣ୍ଟିକ ସନନ୍ଦ ପରିକଳ୍ପନା କରିଥିଲେ । ତହିଁରେ ଭାରତର ନାମଗନ୍ଧ ନ ଥିଲା । ଏହା ଭାରତ ପ୍ରତି ପ୍ରଯୋଜ୍ୟ କି ନା, ପ୍ରଶ୍ନ ଉଠିବାରୁ ପରାଧୀନ ଭାରତ ପ୍ରତି ଏହା ପ୍ରଯୋଜ୍ୟ ନୁହେ ବୋଲି ଚର୍ଚ୍ଚିଲ ସାହେବ କହିଥିଲେ । ପରିଶେଷରେ ଏପରି ସନନ୍ଦର କୌଣସି ଅସ୍ତିତ୍ୱ ନାହିଁ ବୋଲି ମଧ୍ୟ କୁହା ଯାଇଥିଲା ! ବର୍ତ୍ତମାନ କ୍ରିପସ୍ ସାହେବଙ୍କ ମହାକାଳ ଦେଖି କୌଣସି କୌଣସି ଭାରତୀୟ ମୁଗ୍ଧ ହୋଇ ଯାଇଥିଲେ । କିନ୍ତୁ ମହାତ୍ମାଜୀଙ୍କ ନେତୃତ୍ୱରେ କଂଗ୍ରେସର ଶୈଶବ ଅବସ୍ଥା ନ ଥିବାରୁ ତାହାର ସଦସ୍ୟମାନେ ତହିଁରେ ମୁଗ୍ଧ ହେଲେ ନାହିଁ । କ୍ରିପସ୍ ସାହେବ ନିରାଶରେ ବାହୁଡ଼ିଲେ । ଜାପାନ ଦ୍ୱାର ମୁହଁରେ ଗୋଇଠା ମାରୁଥିବାରୁ ଭାରତ କ୍ରିପସ୍ ପ୍ରସ୍ତାବ ଗ୍ରହଣ କଲା ନାହିଁ ବୋଲି ଚର୍ଚ୍ଚିଲ ସାହେବ କହିଲେ । ହିନ୍ଦୁ ମୁସଲମାନ ବିବାଦ ଭାରତର ସ୍ୱାଧୀନତା ପକ୍ଷରେ ଅନ୍ତରାୟ ବୋଲି ସରକାର କହୁଥିଲେ, ଜିନ୍ନା ମଧ୍ୟ ଭାରତରେ ମୁସଲମାନମାନଙ୍କ ପାଇଁ ୧୯୪୦ ସାଲରୁ ପାକିସ୍ଥାନ

ଦାବି କରି ବସିଥିଲେ । କିନ୍ତୁ ସାହେବ ଚାଲିଯିବା ଉତ୍ତାରେ ମହାତ୍ମାଜୀ ନିଜର ହରିଜନ ପତ୍ରିକାରେ ଇଂରେଜ ସରକାରଙ୍କୁ ଗୋଟିଏ ସୁନ୍ଦର ପରାମର୍ଶ ଦେଲେ । ହିନ୍ଦୁ ମୁସଲମାନ ବିବାଦ ପାଇଁ ସରକାରଙ୍କର ମୁଣ୍ଡ ବଥାଇବାର ପ୍ରୟୋଜନ ନ ଥିଲା । ଭାରତକୁ ସ୍ୱାଧୀନତା ଦେଲା ଉତ୍ତାରୁ ଭାରତୀୟମାନେ ଆପଣା ଘର କଳି ନିଜେ ନିଜେ ତୁଟାଇ ପାରନ୍ତେ । ସରକାର ହିନ୍ଦୁ ମୁସଲମାନ ଉଭୟଙ୍କ ହାତରେ ଶାସନ-ଭାର ଛାଡିବାର ବାଟ ପାଉ ନ ଥିଲେ କୌଣସି ଗୋଟିଏ ସମ୍ପ୍ରଦାୟ ହାତରେ ଭାରତର ଶାସନ ଭାର ଛାଡ଼ି ଦେଲେ ମଧ୍ୟ ଭାରତ ସନ୍ତୁଷ୍ଟ ହିଁ ହେବ । ମୁସଲମାନମାନଙ୍କ ହାତରେ ଭାରତର ଶାସନ-ଭାର ଅର୍ପଣ କରି "ତୁମେ ଭାରତ ଛାଡ଼ି ପଳାଅ" ବୋଲି ମହାତ୍ମାଜୀ ଇଂରେଜ ସରକାରଙ୍କୁ ପରାମର୍ଶ ଦେଲେ । ତଥାପି ଇଂରେଜ ସରକାରଙ୍କୁ ସୁବୁଦ୍ଧି ଦିଶିଲା ନାହିଁ । ଯାହା ହେଉ, କପଟ ବିଚକ୍ଷଣତାର ଅଦ୍ଭୁତ ସରକାରଙ୍କ ଆପତ୍ତିକୁ ମହାତ୍ମାଜୀ କାଟୁଥିଲେ ତାହା ଅନୁଧ୍ୟାନ କରିବା ଉଚିତ । ଯେଉଁ ଦେଶରେ ସରକାର ଯେତେ ଅନ୍ୟାୟ କଲେ ମଧ୍ୟ ତାହାକୁ ସମାଲୋଚନା କରିବା ପାଇଁ ପଞ୍ଚୁଶବର୍ଷ ତଳେ କାହାରି ସାହସ ବଳୁ ନ ଥିଲା ସେ ଦେଶରେ ଭାରତ ଛାଡ଼ ବୋଲି ସରକାରଙ୍କୁ କହିବା ଆଶ୍ଚର୍ଯ୍ୟରେ ବିଷୟ ନୁହେ କି ?

କବିବର ରାଧାନାଥ ଲେଖି ଅଛନ୍ତି :—

"କିବା ଦୁଃଖୀରଙ୍କା କି କୋଟିପତିଏ
ଲାଲ୍‌ପଗଡ଼ିକି ନ ଡରନ୍ତି କିଏ ?"

ଏ ଦେଶର ଲୋକେ ଲାଲପଗଡ଼ି ପିନ୍ଧିଥିବା ସିପାହୀକୁ ମଧ୍ୟ ଡରୁଥିଲେ, ସରକାରଙ୍କୁ ଡରିବା ବିଚିତ୍ର କଥା ନୁହେ । ମହାତ୍ମାଜୀଙ୍କ ନେତୃତ୍ବରେ କଂଗ୍ରେସର ଆନ୍ଦୋଳନ ଲୋକଙ୍କ ହୃଦୟରୁ ସରକାରଙ୍କ ପ୍ରତି ସଞ୍ଚିତ ଭୟ କ୍ରମଶଃ ଦୂରୀଭୂତ କରିଥିଲା, ଏ ବିଷୟରେ କେହି ହେଲେମାନ ସନ୍ଦେହ କରିବେ ନାହିଁ ।

୧୯୪୨ ସାଲରେ ଅଗଷ୍ଟ ମାସ ୮ ତାରିଖରେ ଭାରତର ଜାତୀୟ କଂଗ୍ରେସ ମହାତ୍ମାଜୀଙ୍କର "ଭାରତ ଛାଡ଼" ଯୁଗାନ୍ତକାରୀ ପ୍ରସ୍ତାବକୁ ବୋମ୍ବେଇଠାରେ ଗ୍ରହଣ କରିଥିଲା । କଂଗ୍ରେସର ସେ ଦିନର ଅଧି-ବେଶନ ଭାରତ ଜାତୀୟ ଜୀବନର ଇତିହାସରେ ସୁବର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ । ସେଦିନ ବୋମ୍ବେଇର ବୃଷ୍ଟି-ବିଧୌତ ଗୋୱାଲିଅର ଟ୍ୟାଙ୍କ ନାମକ ସ୍ଥାନରେ କଂଗ୍ରେସର ଶିବିର ସ୍ଥାପିତ ହୋଇଥିଲା । ବହୁବର୍ଷଣର ଛଳନାରେ ନାନାବିଧ ଦମନ ଅଭିନୟ ଜାଲରେ ଭାରତବାସୀଙ୍କୁ ସରକାର ଛନ୍ଦ ନିର୍ଜୀବ କରି ରଖିଥିଲେ । କିନ୍ତୁ କଂଗ୍ରେସର ବୀରମାନେ ଶିବିରରେ ରୁଣ୍ଡ ହୋଇ ଉତ୍ସାହ ଭରା ବଦନରେ ସେନାପତିଙ୍କ ରଣ ସଙ୍କେତକୁ ପ୍ରତୀକ୍ଷା କରୁଥିଲେ । ଭସ୍ମ ତଳେ ଲୁକ୍କାୟିତ ବହ୍ନିକଣା ଶୁଷ୍କ ତୃଣ ଗଦାରେ ପ୍ରବଳ ଶିଖା ବିସ୍ତାର କଲାଭଳି ଜୀର୍ଣ୍ଣଶୀର୍ଣ୍ଣ ବୃଦ୍ଧ ବ୍ୟକ୍ତିଙ୍କ ହୃଦୟରୁ ସତ୍ୟ ସୁନ୍ଦର ମୃଦୁ ଗମ୍ଭୀର ମନ୍ତ୍ର-ଧ୍ୱନି ପ୍ରଚରିଲା । ସେ ଜଣାଇ ଦେଲେ ଯେ, ସଂଗ୍ରାମ ଆରମ୍ଭ କରିବା ପୂର୍ବରୁ ଅପୋଷ ନିଷ୍ପତ୍ତିର ଶେଷଚେଷ୍ଟା ହିସାବରେ ନିଜ ଅଭିମତ ବିଦେଶୀଶାସକଙ୍କ ପ୍ରତିନିଧିଙ୍କୁ ଜଣାଇ ଦେବେ । ସମବେତ ବୀରଗଣ "ଏହା ଯଥାର୍ଥ" କହି ନିଜ ନିଜ ଆଶ୍ରୟ-ସ୍ଥାନକୁ ଗଭୀର ନିଶୀ-ଥରେ ପ୍ରତ୍ୟାବର୍ତ୍ତନ କରିଥିଲେ । ଯେଉଁ ବୋମ୍ବେଇରେ କଂଗ୍ରେସର ଜନ୍ମ ଲଭିଥିଲା ସେହି ବୋମ୍ବେଇରେ ଆଜି କଂଗ୍ରେସର ଚରମ ନିର୍ବାଣ ଘଟିଲା । ଅଦୂରରେ ସାଗରର ଗର୍ଜ୍ଜନ ପରି ପାଣ୍ଡିତ ବାସ୍ତବ୍ୟ ଭାରତର ମର୍ମବେଦନାର ସଙ୍ଗୀତ ଗାଉଥିଲା । ତାହାର ତରଙ୍ଗ-ଧ୍ୱନିରେ ଦୂର ଅତୀତର କରୁଣ-କାହାଣୀ ଜଣାଇ ଦେଉଥିଲା ସତେ ! ଶାସକର ନାଗପାଶ ବନ୍ଧନ ଭାରତ ପ୍ରତି ଦୃଢ଼ତର ହେଉଅଛି ! ତାହାର ସଙ୍ଗେ ତାଳ ରଖି ମୁକ୍ତି-ସଂଗ୍ରାମ ଭୀଷଣତର ହେଉଅଛି । ଶତ୍ରୁମାନଙ୍କର ଭ୍ରୂକୁଟିକୁ ତୁଚ୍ଛକରି ଚାଲିଛି—ଅହିଂସାର ଅବତାର ଓ ତାହାଙ୍କ

ଅନୁଚର ବୃନ୍ଦଙ୍କର ଅଗ୍ରଗତି । ଅଜ ଭାରତମାତାର ଦୁର୍ଦ୍ଦିନରେ ପାପର ଭାର ମୁଣ୍ଡରୁ ଓହ୍ଲାଇ ବିଶ୍ୱର ପ୍ରତ୍ୟେକ ମାନବ ଜାତିର ସମକ୍ଷରେ ଆତ୍ମମର୍ଯ୍ୟାଦା ରକ୍ଷା କରି ମୁକ୍ତ ହେବା ଭାରତ ବାସୀ ଗୃହୀବାର ପଥ କଂଗ୍ରେସ ଅଧିକାର କରିବ । ଏଣୁ ୧୯୪୨ ସାଲର ଅଗଷ୍ଟ ୮ ତାରିଖ ଏକଟି ସୁଖ ଭୀଷଣକୁ ରୋକିବା ପାଇଁ କେହି ସମର୍ଥ ହେବେ ନାହିଁ ।

କ୍ରିପ୍‌ସ ସାହେବଙ୍କ ପ୍ରସ୍ତାବ କଂଗ୍ରେସ ପ୍ରତ୍ୟାଖ୍ୟାନ କରିଥିବାରୁ କଂଗ୍ରେସ ପ୍ରତି ବ୍ରିଟିଶ୍ ଜାତି କ୍ରୁଦ୍ଧ ହୋଇ ପଡ଼ିଥିଲେ । ପୁଣି ମହାତ୍ମାଜୀଙ୍କ ଅହିଂସା-ଆନ୍ଦୋଳନର ମର୍ମକୁ ଉଦ୍ଭାଳା ସମ୍ବନ୍ଧରେ ପୂର୍ବରୁ ତାହାଙ୍କର ଅନୁଭୂତି ଥିଲା । ମହାତ୍ମାଜୀଙ୍କ ଆନ୍ଦୋଳନ-ନାଷ୍ଟିର ପ୍ରସ୍ତାବ-ପତ୍ର ପଢ଼ିବା ପୂର୍ବରୁ ଶାସକମାନେ ଧୈର୍ଯ୍ୟ ହରାଇ ବିଚଳିତ ହୋଇ ପଡ଼ିଥିଲେ । ଏଣୁ ଅଗଷ୍ଟ ୯ ତାରିଖର ସୂର୍ଯ୍ୟୋଦୟ ପୂର୍ବରୁ ନେତାମାନଙ୍କୁ ସେମାନେ ବନ୍ଦୀକରି ପକାଇ ଥିଲେ । ବନ୍ଦୀ ହେବା ବେଳେ "କରେଙ୍ଗେ ଇୟେ ମରେଙ୍ଗେ" ମନ୍ତ୍ରଟି (ମନ୍ତ୍ରଂ ସାଧୟେତ୍ ବା ଶରୀରଂ ପାତୟେତ୍ ଅର୍ଥାତ୍ କରିବ ବା ମରିବ) ମହାତ୍ମାଜୀ ଦେଶବାସୀଙ୍କୁ ଦେଇ ଗଲେ । ଖାଇବରଠାରୁ ମଣିପୁର ପର୍ଯ୍ୟନ୍ତ ବ୍ୟାପିଥିବା ହିମାଳୟର ପାଦ ଦେଶରୁ ଅରମ୍ଭ କରି କୁମାରିକା ପର୍ଯ୍ୟନ୍ତ ସମଗ୍ର ଭାରତରେ ପବନର ଝଙ୍କାରରେ ଏହି ମନ୍ତ୍ରଟି ଗର୍ଜ୍ଜି ଉଠିଲା । ଦେଶର ଜନସାଧାରଣ ପାଗଳ ପରି ମାତି ଉଠିଲେ । କଂଗ୍ରେସୀ, ସମାଜତନ୍ତ୍ରୀ, ପ୍ରଗତିବାଦୀ, ବିପ୍ଳବୀ ପ୍ରଭୃତି ଏକ ସ୍ୱରରେ ମନ୍ତ୍ର ଉଚ୍ଚାରଣ କଲେ । ଯାହାକୁ ଯେପରି ଦିଶିଲା ସେ ସେପରି ସଂଗ୍ରାମ ଚଳାଇଲା । ପ୍ରତ୍ୟେକେ ନିଜେ ନିଜେ ସୈନିକ ଓ ସେନାପତି । ଏହି ସଂଗ୍ରାମର ବିବରଣ ଉଲ୍ଲେଖ କରିବାର ଉପଯୁକ୍ତ

ସ୍ଥାନ ଏଠାରେ ନାହିଁ । ସମସ୍ତେ ଜାଣନ୍ତି ଯେ, ଏହି ସଂଗ୍ରାମ ସରକାରଙ୍କୁ ବଡ଼ ବ୍ୟତିବ୍ୟସ୍ତ କରି ପକାଇଥିଲା । ସରକାରଙ୍କ ଚୂଡ଼ାନ୍ତ ସୈନ୍ୟ ଓ ଅସ୍ତ୍ରବଳ ସତ୍ତ୍ୱେ ମହାତ୍ମାଜୀ ୧୯୪୪ ସାଲର ମେ ୬ ତାରିଖରେ ମୁକ୍ତିଲାଭ କରି ବିପ୍ଳବ ସ୍ଥଗିତ କରିବା ପାଇଁ ନିର୍ଦ୍ଦେଶ ଦେବା ପର୍ଯ୍ୟନ୍ତ ଭାରତର କେତେକ ଥାନାରେ ବ୍ରିଟିଶ୍ ଶାସନ ସମୂଳେ ନଷ୍ଟ ହୋଇଥିଲା । ଉଡ଼ା ଜାହାଜରେ ଆକାଶରୁ ଗୁଳି ବର୍ଷଣ କରି ଓ ଭାରତୀୟ ଲଳନାଙ୍କର ମାନମର୍ଯ୍ୟାଦା ନଷ୍ଟକରି ମଧ୍ୟ ବିପ୍ଳବ-ନିବାରଣରେ ସରକାର ସମର୍ଥ ହେଲେ ନାହିଁ । ଲୋକେ ମନୁଷ୍ୟ-ରଚିତ କୃତ୍ରିମ ଆଇନ ଭଙ୍ଗ କରୁଥିଲେ । ସରକାର ଈଶ୍ୱର-ନିର୍ଦ୍ଦେଶିତ ପବିତ୍ର ନିୟମ ଭଙ୍ଗ କରୁଥିଲେ । ରେ ଅଧମ ମାନବ ! ସ୍ୱାର୍ଥ-ବୁଦ୍ଧିରେ ତୁ କାହାକୁ କ୍ଷୁଦ୍ର ମଣ ନା । ପ୍ରତ୍ୟେକ ମନୁଷ୍ୟଠାରେ ଈଶ୍ୱରଙ୍କର ମହତୀ ଶକ୍ତିର ସମାବେଶ ଘଟିଅଛି । ସେ ଶକ୍ତି ସାଧନା-ବଳରେ ଉଦ୍‌ବୁଦ୍ଧ ହେଲେ ପ୍ରଳୟର ଉତ୍ତାଳ-ତରଙ୍ଗର ଅଗ୍ରଗତିକୁ ଯେ କୌଣସି କ୍ଷୁଦ୍ର ଜୀବ ପ୍ରତିରୋଧ କରିପାରେ । ମାନବ ! ଜାଣି ଶୁଣି ତୁ ଅହଙ୍କାରରେ ଉନ୍ମତ୍ତ ହୋଇ ଅପରକୁ ତୁଚ୍ଛ ମଣୁ କାହିଁକି ? ଈଶ୍ୱର-ଭକ୍ତିର ଅଭାବରେ ସିନା !

ବ୍ରିଟିଶ ସରକାର ଭାରତବାସୀଙ୍କ ପିଠିରେ ଓ ମନରେ ଆଘାତ ଦେଇ ସନ୍ତୁଷ୍ଟ ନ ଥିଲେ । ସେମାନଙ୍କ ପେଟକୁ ମଧ୍ୟ ମାରିଥିଲେ । ଦେଶର ସମସ୍ତ ଧାନ ଚାଉଳ ନିଜ ଭଣ୍ଡାରକୁ ନେଇ ଶାସ୍ତିର ଅନାଟନ ମଧ୍ୟ ସୃଷ୍ଟି କରିଥିଲେ । ଲକ୍ଷ ଲକ୍ଷ ଲୋକଙ୍କର ପ୍ରାଣନାଶ ଘଟିଥିଲା । ତଥାପି ଝଡ଼ ତୋଫାନର ପର ମୁହୂର୍ତ୍ତରେ ନିର୍ମଳ ଆକାଶରେ ରମଣୀୟ ସୂର୍ଯ୍ୟ-ରଶ୍ମି ଉପଭୋଗ କରିବାର ଆଶା ବହୁ ଭାରତ ବାସୀ ରଖିଥିଲେ ।

୧୯୪୩ ସାଲର ଫେବୃଆରୀ ୧୦ ତାରିଖରେ ମହାତ୍ମାଜୀ ପୁନାର ବନ୍ଦୀଶାଳାରେ (ଅଗା ଖାଁ ପ୍ରାସାଦରେ) ଅନଶନ ଆରମ୍ଭ କରିଥିଲେ । ଏହି ସମୟରେ କେତେକ ସର୍ତ୍ତରେ ତାହାଙ୍କୁ ମୁକ୍ତ ଦେବା ପାଇଁ ଭାରତ ସରକାର ପ୍ରସ୍ତାବ କଲେ । ମାତ୍ର ମହାତ୍ମାଜୀ ତାହା ପ୍ରତ୍ୟାଖ୍ୟାନ କଲେ । ଅତଃପର ମାର୍ଚ୍ଚ ୩ ତାରିଖରେ ଏକୋଇଶ ଦିନ ବ୍ୟାପୀ ଅନଶନ କରିଥିଲେ । ମହାତ୍ମାଜୀ ହିଂସାତ୍ମକ ବିପ୍ଳବ ସୃଷ୍ଟି କରିବା ପାଇଁ ଆୟୋଜନ କରୁଥିଲେ ବୋଲି ଭାରତ-ସରକାର ଅଭିଯୋଗ କରୁଥିଲେ । ଉପଯୁକ୍ତ ଅଦାଲତ ଦ୍ୱାରା ଏହି ଅଭିଯୋଗର ଯଥାର୍ଥତା ବିଚାର କରିବା ନିମନ୍ତେ ଅନଶନ ଦ୍ୱାରା ସରକାରଙ୍କୁ ନିଜର ଦାବୀ ଜଣାଇ ଦେଇଥିଲେ । ୧୯୪୪ ସାଲର ଫେବୃଆରୀ ୨୨ ତାରିଖରେ ତାହାଙ୍କର ସହଧର୍ମିଣୀ ପୁନାର ପ୍ରାସାଦ କାରାରେ ପରଲୋକ ଗମନ କଲେ । ଏହି ଦିନଠାରୁ ଭାରତରେ ଇଂରେଜୀ ରାଜତ୍ୱର ଗତିପଥର ଇତିହାସ କ୍ରମଶଃ ସ୍ଥିର ହେବାକୁ ଲାଗିଲା ।

ଜାପାନର ବିଜୟ-ଅଭିଯାନ ପ୍ରତିହତ କରିବା ପାଇଁ ସିଙ୍ଗାପୁର ଠାରେ ଦୃଢ଼ ଦୁର୍ଗ ରଚନା କରି ତାହା ଶତ୍ରୁର ଦୁର୍ଭେଦ୍ୟ ଭାବି ଇଂରେଜ ସୈନ୍ୟବାହିନୀ ନିଶ୍ଚିନ୍ତ ଥିଲେ । ୧୯୪୨ ସାଲର ଫେବୃଆରୀ ୧୫ ତାରିଖରେ ଜାପାନର ପ୍ରଥମ ଆଘାତରେ ଏହି ଦୁର୍ଗ ଭାଙ୍ଗି ଯାଇଥିଲା । ଜାପାନ ନିକଟରେ ଅନେକ ଭାରତୀୟ ସୈନ୍ୟ ଆତ୍ମସମର୍ପଣ କରିଥିଲେ । ଜାପାନ ମୋହନ ସିଂହଙ୍କ ତତ୍ତ୍ୱାବଧାନରେ ଏହି ସୈନ୍ୟମାନଙ୍କୁ ରଖିଥିଲା । ଏହି ମୋହନ ସିଂହ ସେହି ସୈନ୍ୟମାନଙ୍କୁ ନେଇ ଭାରତୀୟ ଜାତୀୟବାହିନୀ ଗଠନ କରିଥିଲେ । ଭାରତର ସ୍ୱାଧୀନତା-ଲାଭ ପାଇଁ ଲଢ଼ିବା ଏହି ବାହିନୀର ଉଦ୍ଦେଶ୍ୟ ଥିଲା ।

ବଙ୍ଗ ବିପ୍ଳବର କର୍ମୀ ରାସବିହାରୀ ବୋଷ ଅନେକଦିନ ତଳୁ ଟୋକିଓରେ ଆଶ୍ରୟ ଗ୍ରହଣ କରିଥିଲେ । ତାହାଙ୍କ ପରାମର୍ଶ ଅନୁସାରେ ସିଙ୍ଗାପୁରର ବାହିନୀ ସୈନ୍ୟ ଓ ଜାପାନ ହାତରେ ବନ୍ଦୀ ମାଲୟ ପ୍ରଭୃତିର ସୈନ୍ୟମାନଙ୍କୁ ନେଇ ଆଜାଦ ହିନ୍ଦ୍ ଫୌଜ ନାମରେ ସୈନ୍ୟବାହିନୀ ଗଠିତ ହେଲା । କିନ୍ତୁ ରାସବିହାରୀ ବୋଷ ଓ ମୋହନ ସିଂହଙ୍କ ମଧ୍ୟରେ ମନୋମାଳିନ୍ୟ ଉପସ୍ଥିତ ହେଲା । ଜାପାନ ମୋହନ ସିଂହଙ୍କୁ ବନ୍ଦୀ କରିଥିଲା । ବନ୍ଦୀହେବା ପୂର୍ବରୁ ଛତ୍ରଭଙ୍ଗ ହେବା ନିମନ୍ତେ ମୋହନ ସିଂହ ଆଜାଦ ହିନ୍ଦ୍ ଫୌଜର ସୈନ୍ୟ-ମାନଙ୍କୁ କହିଥିଲେ । ସେମାନେ ଛତ୍ରଭଙ୍ଗ ହେଲେ । ରାସବିହାରୀ ବୋଷ ସୈନ୍ୟ-ବାହିନୀ ପୁନର୍ଗଠନ କରିପାରିଲେ ନାହିଁ । ୧୯୪୩ ସାଲର ଜୁନ୍ ୨ ତାରିଖରେ ସୁଭାଷଚନ୍ଦ୍ର ବୋଷ ସିଙ୍ଗାପୁରଠାରେ ପହଞ୍ଚି ଥିଲେ । ୧୯୪୧ ସାଲର ଜାନୁଆରୀ ୨୬ ତାରିଖରେ ସୁଭାଷ ବାବୁ ଅକସ୍ମାତ୍ ତାଙ୍କର କଲିକତା ବାସ-ଭବନରୁ ଅଦୃଶ୍ୟ ହୋଇଥିଲେ । ସେତେବେଳେ ସରକାର ତାହାଙ୍କ ବିରୁଦ୍ଧରେ ଯୋଡ଼ିଏ ମାମଲା ଉପସ୍ଥାପିତ କରିଥିଲେ । ଶୁଣାଯାଏ, ଛଦ୍ମବେଶରେ ସେ ପେଶୱାର ବାଟେ ଯାଇ କାବୁଲରେ ପହଞ୍ଚି ସେଠାରୁ ଜର୍ମାନୀକୁ ଯାଇଥିଲେ । ଯାହା ହେଉ, ସୁଭାଷ ବାବୁ ସିଙ୍ଗାପୁରଠାରେ ପହଞ୍ଚି ଆଜାଦ୍ ହିନ୍ଦ୍ ଫୌଜ ପୁନର୍ଗଠନ କରିଥିଲେ । “ଚଲୋ ଦିଲ୍ଲୀ” ମନ୍ତ୍ର ଗାଇ ସୁଭାଷ ବାବୁଙ୍କ ନିର୍ଦ୍ଦେଶ ଅନୁସାରେ ସୈନ୍ୟମାନେ ମଣିପୁରର ଅନେକସ୍ଥାନ ଅଧିକାର କରି ଭାରତର ଭିତରକୁ ପଶିବାକୁ ଚେଷ୍ଟା କଲେ । ଯେଉଁ ଭାରତୀୟ ସୈନ୍ୟ ଜାପାନ ନିକଟରେ ଆତ୍ମସମର୍ପଣ କରିଥିଲେ ସେମାନେ ନିଜ ଶକ୍ତିକୁ ହଟାଇଲେ କିପରି ? ସେତେ-ବେଳେ ଅନ୍ତରର ପ୍ରେରଣାରେ ଯୁଦ୍ଧ ନ କରି କେବଳ ହୁକୁମ ମାନି ଅସ୍ତ୍ର ଧରି ଛିଡ଼ା ହେଉଥିଲେ । ବର୍ତ୍ତମାନ ଜାତିର ସ୍ୱାଧୀନତା

ଲୀଙ୍କର ଅଙ୍ଗୀଠରେ ପ୍ରାଣରେ ଉତ୍ସାହର ସଞ୍ଚାର ହୋଇଥିବାରୁ ସେମାନେ ଅସୀମ ଶକ୍ତି ଓ ସାହସରେ ବଳୀୟାନ୍ ହୋଇ ପଡ଼ିଥିଲେ । ଏଣୁ ବଳ ମନର ଅନ୍ତର୍ଗତ—ଶରୀରର ନୁହେଁ ।

ଆଜାଦ୍ ହିନ୍ଦ୍ ଫୌଜର ଅଗ୍ରଗତି ଦେଖି ଭାରତ ରକ୍ଷା ଅସମ୍ଭବ ମଣି ୧୯୦୪ ସାଲର ମେ ୬ ତାରିଖରେ ମହାତ୍ମାଜୀଙ୍କୁ ସରକାର ମୁକ୍ତ କଲେ । ଏହା ପରେ ମହାତ୍ମାଜୀ ହିନ୍ଦୁ-ମୁସଲମାନ ଐକ୍ୟ ସ୍ଥାପନ ପାଇଁ ପୁଣି ଜିନ୍ନାଙ୍କ ସଙ୍ଗେ ଆଲୋଚନା କରି ବ୍ୟର୍ଥକାମ ହେଲେ । ତାପରେ ୧୯୪୫ ସାଲରେ ଇଉରୋପ ମହାସମରର ଶାନ୍ତି ମେ ମାସରେ ଭାରତରେ ଘୋଷଣା କରା ଯାଇଥିଲା । ଜୁନ୍ ମାସରେ ସିମିଲାରେ ନେତୃ-ସମ୍ମିଳନୀ ବସିଥିଲା । ତହିଁରେ ଯୋଗଦେବା ପାଇଁ ବଡ଼ଲାଟ ଓ୍ୟାଭେଲ ମହାତ୍ମାଜୀଙ୍କୁ ଅନୁରୋଧ କରିଥିଲେ ଓ ସେ ଉକ୍ତ ସମ୍ମିଳନୀରେ ଯୋଗ ଦେଇଥିଲେ । କିନ୍ତୁ ପ୍ରତିକ୍ରିୟାଶୀଳ ଶକ୍ତିର ଚକ୍ରାନ୍ତରେ ତାହା ବ୍ୟର୍ଥ ହୋଇଥିଲା । ତାପରେ ମାସକ ଭିତରେ ଜାପାନ ସହିତ ମିତ୍ର ଶକ୍ତିର ଯୁଦ୍ଧ ନିବୃତ୍ତି ଘୋଷଣା କରାଯାଏ । ଏହି ବର୍ଷ ଡିସେମ୍ବର ମାସର ପହିଲା ତାରିଖରେ ମହାତ୍ମାଜୀ କଲିକତା ଆସିଥିଲେ । ସେଠାରେ ବଙ୍ଗଳାର ଲାଟ ଓ ଭାରତର ବଡ଼ଲାଟଙ୍କ ସଙ୍ଗେ ତାହାଙ୍କର ଦେଖା ହୋଇଥିଲା । ଏ ଭିତରେ ଅନ୍ୟାନ୍ୟ କଂଗ୍ରେସ କର୍ମୀମାନେ କାରାଦଣ୍ଡରୁ ମୁକ୍ତିଲାଭ କରିଥିଲେ ଏବଂ ବର୍ମା ଓ ମାଲୟରୁ ବନ୍ଦୀ ହୋଇ ଆସିଥିବା ଆଜାଦ୍ ହିନ୍ଦ୍ ଫୌଜର ସୈନିକଙ୍କର ବ୍ରିଟିଶ ସରକାରଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିବା ଅପରାଧ ବିଚାର କରିବାର କଥା ହେଉଥାଏ । ଏ ସମ୍ବନ୍ଧରେ ସରକାର ଓ କଂଗ୍ରେସ ମଧ୍ୟରେ ଆଲୋଚନା ହେବା ଫଳରେ ଗୁରୁତର ଅପରାଧୀ ଛଡ଼ା ଅନ୍ୟ ସୈନିକମାନେ ଖଲାସ

ହେବା ସ୍ଥିର ହୋଇଗଲା, ଡିସେମ୍ବର ୧୮ ତାରିଖରେ ମହାତ୍ମାଜୀ ଶାନ୍ତି-ନିକେତନକୁ ଯାଇ ସେଠାରେ ଦୀନବନ୍ଧୁ ଆଣ୍ଡ୍ରୁଜଙ୍କ ହାସପାତାଲର ଭିତ୍ତି-ପ୍ରସ୍ତର ସ୍ଥାପନ କରିଥିଲେ ।

୧୯୪୨ ସାଲର ଅଗଷ୍ଟ ଆନ୍ଦୋଳନ ମେଦିନୀପୁରରେ ଯେତେ ପ୍ରବଳ ହୋଇଥିଲା, ସରକାରଙ୍କ ଦମନ-ଲୀଳା ତାହାଠାରୁ ଶତଗୁଣରେ ଭୀଷଣତର ହୋଇଥିଲା । ତହିଁରେ ପୁଣି ଅକ୍ଟୋବର ମାସରେ ପ୍ରକୃତି ଦେବୀଙ୍କର ବାତ୍ୟା-ନୃତ୍ୟ ମେଦିନୀପୁରକୁ ଛାରଖାର କରି ପକାଇଥିଲା ତଥାପି ସରକାରଙ୍କ ଶାସନତନ୍ତ୍ର ତମଲୁକ ଥାନାରେ ପୁନଃପ୍ରତିଷ୍ଠିତ ହୋଇ ପାରି ନ ଥିଲା । ମେଦିନୀପୁରର ଦୁର୍ଦ୍ଦଶା ଶୁଣି ୧୯୪୫ ସାଲର ଡିସେମ୍ବର ୨୫ ତାରିଖରେ ମହାତ୍ମାଜୀ କଲିକତାରୁ ମେଦିନୀପୁର ଭ୍ରମଣରେ ଯାତ୍ରା କରିଥିଲେ ।

କୌଣସି ସ୍ଥାନର ଲୋକଙ୍କର ଗୁରୁତର ଶୋଚନୀୟ ଦଶା ଶୁଣିଲେ ସେ ସ୍ଥାନକୁ ଯିବା ମହାତ୍ମାଜୀଙ୍କର ଅଭ୍ୟାସଗତ ହୋଇ ପଡ଼ିଥିଲା । ସେଠାରେ ପ୍ରାର୍ଥନା ସଭାର ଆୟୋଜନ କରି ଈଶ୍ବରଙ୍କୁ ପ୍ରାର୍ଥନା କରୁ ଥିବାରୁ ଲୋକମାନଙ୍କର ମନରେ ବଡ଼ ଆଶ୍ବାସନା ଜାତ ହେଉଥିଲା । ଈଶ୍ବର-ପ୍ରାର୍ଥନା ମନର ଅଶାନ୍ତି ଦୂର କରିବାର ଯେ ଶ୍ରେଷ୍ଠତମ ଉପାୟ ତାହା ଅନୁଭବୀ ଛଡ଼ା ଅନ୍ୟ କେହି ବୁଝିବେ ନାହିଁ । ସେଥିପାଇଁ ପ୍ରାର୍ଥନାକୁ ମହାତ୍ମାଜୀ ମନୁଷ୍ୟର ଶ୍ରେଷ୍ଠତମ କର୍ତ୍ତବ୍ୟ ବୋଲି ପ୍ରାଚୀନ ଆର୍ଯ୍ୟ ଋଷିମାନଙ୍କ ପରି କହି ଅଛନ୍ତି । ଆମର ଦୁଃଖ ଦୂର କରିବା ପାଇଁ ନିଜେ କଷ୍ଟ ସହି ମହାତ୍ମାଜୀ ଅନେକ ଥର କାର୍ଯ୍ୟ କରୁଥିଲେ । ସେ ସମସ୍ତ ଆମେ ପାଶୋରି ଦେଇ ପାରୁ । କିନ୍ତୁ ଯେଉଁ ଈଶ୍ବର-ପ୍ରାର୍ଥନା ସେ ଆମକୁ ଦେଇ ଯାଇ ଅଛନ୍ତି ତାହାକୁ ପାଶୋରିଲେ ଆମେ ସଦା ନରକ-ଯନ୍ତ୍ରଣା ଭୋଗୁ

ଥିବ । ପ୍ରାର୍ଥନାଦ୍ୱାରା ମନୁଷ୍ୟର ଅହଙ୍କାର ଦୂର ହୋଇ ଆତ୍ମ-ନିୟନ୍ତ୍ରଣର ଶକ୍ତି ଜନ୍ମିଲେ ମନୁଷ୍ୟ ଶାନ୍ତି ସୁଖ ଭୋଗ କରିପାରେ । ଈଶ୍ୱରଙ୍କୁ ଧନଜନ ମାଗିବା ତାହାଙ୍କ ପ୍ରାର୍ଥନାର ଅର୍ଥ ନୁହେ । ଆମର ଜୀବନ-ନିୟନ୍ତା ରୂପେ ଅନ୍ୟ ଶକ୍ତି ଅଛି ବୋଲି ଚିନ୍ତାକରି ଅହଙ୍କାର ଦୂର କରିବା ତାହାଙ୍କ ପ୍ରାର୍ଥନାର ଅର୍ଥ ।

୧୯୪୬ ସାଲର ଜାନୁଏରୀ ୮ ତାରିଖରେ ମହାତ୍ମାଜୀ ଆସାମ ଭ୍ରମଣରେ କଲିକତାରୁ ଯାତ୍ରା କରିଥିଲେ । ୯ ତାରିଖରେ ଗୌହାଟୀରେ ଗୋଟିଏ ଜନ-ସଭାରେ ସେ ବକ୍ତୃତା ଦେଇଥିଲେ । ଅଳ୍ପ କେତେ ମାସ ମଧ୍ୟରେ ଭାରତ ସ୍ୱାଧୀନତା ପାଇବ ବୋଲି ସେ ପ୍ରଥମେ ଏଠାରେ ପ୍ରକାଶ କରିଥିଲେ । ଏଥିରୁ ଜଣାଯାଏ, ଭାରତକୁ ସ୍ୱାଧୀନତା କେବେ ଦିଆ ଯିବ ତାହା ସରକାର ତାହାଙ୍କୁ କହି ଥିବାରୁ ସେ ବନ୍ଦୀଶାଳା ତ୍ୟାଗ କରିଥିଲେ । ନୋହିଲେ ୧୯୪୪ ସାଲରେ କଦାପି ସେ କାରା ତ୍ୟାଗ କରି ନ ଥାଆନ୍ତେ । "କରେଙ୍ଗେ ଇୟେ ମରେଙ୍ଗେ" ମନ୍ତ୍ର ଘେନି ଯେ ସାଧନା ଆରମ୍ଭ କରିଥିଲେ ସିଦ୍ଧି-ଲାଭ ପୂର୍ବରୁ ନିଶ୍ଚିନ୍ତ ରହିବା ତାହାଙ୍କ ପକ୍ଷରେ ଅସମ୍ଭବ ।

ଆସାମରୁ ଫେରି ଆସି ଜାନୁଆରୀ ୧୪ ତାରିଖରେ ମହାତ୍ମାଜୀ କଲିକତାର ସୋଦପୁର ଆଶ୍ରମରେ ପହଞ୍ଚି ଥିଲେ । ମାନ୍ଦ୍ରାଜରେ ଗୋଟିଏ ଶ୍ରମିକ ସଭାରେ ବକ୍ତୃତା ଦେବା ପାଇଁ ସୋଦପୁର ଠାରୁ ସେ ଫେବୃଆରୀ ପହିଲା ତାରିଖରେ ଯାତ୍ରା କରିଥିଲେ । ଏହା ଭିତରେ କେନ୍ଦ୍ର ଓ ପ୍ରାଦେଶିକ ବ୍ୟବସ୍ଥାପକ ସଭାମାନଙ୍କୁ ସଭ୍ୟ ନିର୍ବାଚିତ ହୋଇଥିଲେ । ଏହି ନିର୍ବାଚନରେ କଂଗ୍ରେସ କର୍ମୀମାନେ ଆଶାନୁରୂପ ଜୟଲାଭ କରିଥିଲେ ।

ଇଙ୍ଗଲଣ୍ଡରେ ଶାନ୍ତି ସ୍ଥାପିତ ହେବା ସଙ୍ଗେ ସଙ୍ଗେ ବିଲାତରେ ପାର୍ଲିଆମେଣ୍ଟର ନୂତନ ସଭ୍ୟ ନିର୍ବାଚିତ ହୋଇଥିଲେ । ଅଧିକ ସଂଖ୍ୟାରେ ଶ୍ରମିକ ଦଳର କର୍ମୀମାନେ ପାର୍ଲିଆମେଣ୍ଟର ସଭ୍ୟ ନିର୍ବାଚିତ ହେବାରୁ ସେଠାରେ ଶାସନ-ପରିଚାଳନାର ଭାର ଉକ୍ତ ସଭ୍ୟମାନଙ୍କ ହାତକୁ ଗଲା । ଆଟଲି ସାହେବ ପ୍ରଧାନ ମନ୍ତ୍ରୀ ହେଲେ । ଭାରତର ରାଜନୈତିକ ସମସ୍ୟାର ସମାଧାନ ନିମନ୍ତେ ଲର୍ଡ ପେଥିକ ଲରେନ୍ସ ଓ ଷ୍ଟାଫୋର୍ଡ କ୍ରିପ୍ସ ୧୯୪୬ ସାଲ ଅପ୍ରେଲ ମାସରେ ଭାରତକୁ ଆଗମନ କରିଥିଲେ । ନୂଆ ଦିଲ୍ଲୀଠାରେ କଂଗ୍ରେସ ଓ ମୁସଲ-ମାନମାନଙ୍କ ଲିଗର ନେତାମାନଙ୍କ ସହିତ ଆଲୋଚନା କରି ଉଭୟ ଦଳର ପ୍ରତିନିଧିମାନେ ମିଶି କେନ୍ଦ୍ର ସରକାର ଗଠନ କରି ଭାରତର ଭବିଷ୍ୟତ ଶାସନ-ପଦ୍ଧତି ନିର୍ଦ୍ଧାରଣ କରିବେ ବୋଲି ତାହାଙ୍କର ପନ୍ଥା ପେଥିକ ଲରେନ୍ସ ଓ କ୍ରିପ୍ସ ଅବିଷ୍କାର କରୁଥିଲେ । ଏହାକୁ ଶାନ୍ତି ମିଶନ କହନ୍ତି । ସେତେବେଳେ ମହାତ୍ମାଜୀ 'ହରିଜନ' ପତ୍ରିକାରେ ଗୋଟିଏ ପ୍ରବନ୍ଧରେ ଲେଖିଥିଲେ ଯେ, ଏହି ମନ୍ତ୍ରୀ ମିଶନର ପ୍ରସ୍ତାବ ରେଖି ଭାରତବାସିମାନେ ଗର୍ବ ବୋଧ କରିପାରନ୍ତି । କାରଣ, ଏଥି ପୂର୍ବରୁ ଭାରତୀୟମାନଙ୍କ ମତ ନ ନେଇ ବ୍ରିଟିଶ୍ ସରକାର ଲଣ୍ଡନରେ ବସି ଭାରତର ଶାସନ ସଂସ୍କାରର ପ୍ରଣାଳୀ ନିରୂପଣ କରୁଥିଲେ । କଂଗ୍ରେସର ସଂଗ୍ରାମ-ଫଳରେ ତାହାଙ୍କର ମତଗତି ଏବେ ବଦଳି ଯାଇଥିଲା । ମହାତ୍ମାଜୀ ଜୁନ୍ ମାସରେ ଉକ୍ତ ପତ୍ରିକାରେ ଆଉ ଗୋଟିଏ ପ୍ରବନ୍ଧ ପ୍ରକାଶ କରିଥିଲେ । ତହିଁରେ ଅବିଳମ୍ବେ ଭାରତରୁ ବ୍ରିଟିଶ୍ ସୈନ୍ୟ ଅପସାରଣ କରିବା ପାଇଁ ସେ ଦାବି କରିଥିଲେ ।

ଶାନ୍ତି ମିଶନ ଏକପ୍ରକାର ସଫଳକାମ ହୋଇଥିଲା । ହିନ୍ଦୁ ଓ ମୁସଲମାନ ମିଶି କେନ୍ଦ୍ର ସରକାର ଗଢ଼ା ହେବାର ସ୍ଥିର ହେଲା । କଂଗ୍ରେସ ଓ ଲିଗ୍ ଶାନ୍ତି ମିଶନର ପ୍ରସ୍ତାବରେ ରାଜି ହୋଇ-

ଗଲେ । କହ୍ଣୁଦାନ ଉପରେ ଜିନ୍ନା ସାହେବ ନିଜର ଭ୍ରମ ବୁଝି ପାରିଥିଲେ । ସେ ଦାବି କରୁଥିବା ପାକିସ୍ଥାନ ଏ ପ୍ରସ୍ତାବରେ ଲାଭ କରିବାର ଆଶା ନ ଥିଲା । ଏଣୁ କେନ୍ଦ୍ର ସରକାରକୁ ନିଜ ଦଳରୁ ସଭ୍ୟ ପଠାଇବାକୁ ରାଜି ହେଲେ ନାହିଁ । କଂଗ୍ରେସ ତରଫରୁ ସଭ୍ୟ ନିର୍ବାଚିତ ହୋଇ ଅଗଷ୍ଟ ମାସରେ କେନ୍ଦ୍ର ସରକାର ଗଢ଼ା ହେଲା । ଜିନ୍ନା ସାହେବଙ୍କ ପାକିସ୍ଥାନ ଦାବିରେ କଲିକତାରେ ସାମ୍ପ୍ରଦାୟିକ ବିବାଦର ଭୟଙ୍କର କାଣ୍ଡ ଘଟିଗଲା । ବଡ଼ଲାଟ ୱେଭେଲ ସାହେବ ଲିଗ୍ ସହିତ କଂଗ୍ରେସର ମିଳା ମିଶାର ଚେଷ୍ଟା କଲେ । କଂଗ୍ରେସରୁ ପ୍ରେରିତ ସଭ୍ୟମାନଙ୍କ ଅସୁବିଧା ସୃଷ୍ଟି କରିବା ପାଇଁ କେତେ ଜଣ ସଭ୍ୟ ଲିଗ୍ ତରଫରୁ କେନ୍ଦ୍ର-ସରକାରକୁ ଗଲେ । ଭାରତରେ ସାମ୍ପ୍ରଦାୟିକ ହତ୍ୟାକାଣ୍ଡ ବଢ଼ିବାକୁ ଲାଗିଲା । ୧୯୪୬ ସାଲର ଅକ୍ଟୋବର ୧୦ ତାରିଖରେ ସାମ୍ପ୍ରଦାୟିକ ଦଙ୍ଗା ବଙ୍ଗ ପ୍ରଦେଶର ନୂଆଖାଲିରେ ଆରମ୍ଭ ହୋଇଥିଲା । କ୍ରମଶଃ ଏହା ଗୁରୁତର ଆକାର ଧାରଣ କରିଥିଲା । ନୂଆଖାଲିର ପରିସ୍ଥିତି-ସମ୍ବାଦ ପାଇ ମହାତ୍ମାଜୀ ବିଚଳିତ ହୋଇ ପଡ଼ିଥିଲେ । କେତେକ ମାସ ଭିତରେ ଉପଦ୍ରୁତ ଅଞ୍ଚଳ ପରିଦର୍ଶନ କରିବା ଉଦ୍ଦେଶ୍ୟରେ ମହାତ୍ମାଜୀ ସୋଦପୁର ଆଶ୍ରମରେ ଆସି ପହଞ୍ଚି ଥିଲେ । ସେଠାରୁ ଏକ ସପ୍ତାହ ଭିତରେ ନୂଆଖାଲି ଯାତ୍ରା କରିଥିଲେ । ବୃଦ୍ଧ ବୟସରେ ସେଠାରେ ପଦବ୍ରଜରେ ଗ୍ରାମ ଗ୍ରାମ ଘର ଘର ବୁଲି ଓ ପ୍ରାର୍ଥନା ସଭା ଅନୁଷ୍ଠାନ କରି ସେ ହିନ୍ଦୁ ଓ ମୁସଲମାନମାନଙ୍କ ମଧ୍ୟରେ ଯେପରି ଭାବରେ ସଖ୍ୟ ଓ ଶାନ୍ତି ପୁନଃ ପ୍ରତିଷ୍ଠା କରି ପାରିଥିଲେ ତାହା ଚିନ୍ତା କଲେ ତାଙ୍କ ଅସୀମ କ୍ଷମତାର ପରିଚୟ ମିଳେ । ଭାରତର ସ୍ୱାଧୀନତା ସମ୍ବନ୍ଧରେ ତାହାଙ୍କର ସ୍ଥିର ବିଶ୍ୱାସ ଜନ୍ମି ଥିବାରୁ ବର୍ତ୍ତମାନ ହିନ୍ଦୁ ମୁସଲମାନ ଐକ୍ୟ ଆଣିବା କାର୍ଯ୍ୟରେ ସେ ବ୍ରତୀ

ହୋଇଥିଲେ । ନୂଆଖାଲିରେ ସେ ପାକିସ୍ଥାନ ଦାବି ପ୍ରଥମେ ସ୍ୱୀକାର କରିଥିଲେ । ଆମେରିକାର ଯୁକ୍ତରାଷ୍ଟ୍ର ସ୍ୱାଧୀନତା ପାଇଲା ବେଳେ କେତେକ ରାଷ୍ଟ୍ର କେନ୍ଦ୍ର ସରକାରରେ ଯୋଗ ନ ଦେଇ ସ୍ୱାଧୀନ ହୋଇ ରହିଥିଲେ । କେନ୍ଦ୍ର ସରକାରରେ ଯୋଗ ଦେବାର ପ୍ରୟୋଜନୀୟତା ସେ ଗୁଡ଼ିକ କ୍ରମଶଃ ଉପଲବ୍ଧି କରିଥିଲେ । ସେପରି ଭାରତରେ ପାକିସ୍ଥାନ ବର୍ତ୍ତମାନ କେନ୍ଦ୍ର ସରକାରରୁ ସ୍ୱାଧୀନ ହୋଇ ରହିଲେ ମଧ୍ୟ ଭବିଷ୍ୟତରେ ଯୋଗ ଦେବାର ପ୍ରୟୋଜନୀୟତା ଉପଲବ୍ଧି କରି ପାରିବ । ଏପରି କଥା କହି ସେ ପାକିସ୍ଥାନର ଦାବିକୁ ସ୍ୱୀକାର କରିଥିଲେ । ବଳ ପ୍ରୟୋଗରେ ବ୍ରିଟିଶ୍ ଜାତି ଭାରତରେ ଟିକେ ରହି ପାରିଲା ନାହିଁ । ଏ କଥା ଜାଣୁ ଜାଣୁ କାହାରି ଇଚ୍ଛା-ବିରୁଦ୍ଧରେ ବଳ ପ୍ରୟୋଗ କରିବା ଆମର ଉଚିତ ନୁହେ ବୋଲି ଆମେ ବୁଝି ପାରୁନାହୁଁ । କିନ୍ତୁ ମହାତ୍ମାଜୀ ବହୁ ପୂର୍ବରୁ ବୁଝିଥିଲେ ଯେ ବଳ ପ୍ରୟୋଗରେ ଅନୁଷ୍ଠିତ କାର୍ଯ୍ୟ କ୍ଷଣିକ ।

ନୂଆଖାଲିରେ ଶାନ୍ତି ପ୍ରତିଷ୍ଠିତ ହେଲା ବେଳକୁ ବିହାରରେ-ସାମ୍ପ୍ରଦାୟିକ ଦଙ୍ଗା ହୋଇ ଗଲା । ୧୯୪୭ ସାଲର ମାର୍ଚ୍ଚ ୧୨ ତାରିଖରେ ବିହାରର ଦଙ୍ଗାବିଧ୍ୱସ୍ତ ଅଞ୍ଚଳର ପରିଦର୍ଶନ ସେ ଆରମ୍ଭ କରିଥିଲେ । ନୂଆଖାଲିରେ ହିନ୍ଦୁମାନେ ଯେପରି କ୍ଷତିଗ୍ରସ୍ତ ହୋଇ-ଥିଲେ ବିହାରରେ ମୁସଲମାନମାନେ ତଦନୁରୂପ ହୋଇଥିଲେ । ଏଣୁ ଏଠାରେ ମୁସଲମାନମାନଙ୍କ ସେବା କରିବା ପାଇଁ ମହାତ୍ମାଜୀଙ୍କୁ ସୁବିଧା ମିଳିଥିଲା । ଇତି ମଧ୍ୟରେ ୧୯୪୭ ସାଲର ଫେବ୍ରୁଆରୀ ୨୦ ତାରିଖରେ ବ୍ରିଟିଶ୍ ସରକାର ୧୯୪୮ ସାଲର ଜୁନ ମାସରେ ଭାରତ ସ୍ୱାଧୀନତା ପାଇବ ବୋଲି ଘୋଷଣା କରିଥିଲେ । ଉପରେ ମହାତ୍ମାଜୀ ପାକିସ୍ଥାନର ଦାବୀ ସ୍ୱୀକାର କରିଥିବାରୁ ୧୯୪୭ ସାଲର

ଅଗଷ୍ଟ ୧୫ ତାରିଖରେ ଭାରତ ଓ ପାକିସ୍ଥାନ ନାମକ ଦୁଇଟି ଡୋମିନିଅନ ହେବ ବୋଲି ଜୁନ୍ ମାସ ୩ ତାରିଖରେ ବ୍ରିଟିଶ୍ ପ୍ରଧାନ ମନ୍ତ୍ରୀ ଘୋଷଣା କରିଥିଲେ । ମହାତ୍ମାଜୀ ପ୍ରଥମ ଘୋଷଣାରେ ବ୍ରିଟିଶ୍ ଜାତିର ସଦିଚ୍ଛା ଉପଲବ୍ଧି କରିଥିଲେ, ଦ୍ୱିତୀୟ ଘୋଷଣାରେ ଭାରତ ଛାଡ଼ି ଚାଲି ଯିବାର ପ୍ରସ୍ତାବରେ ସନ୍ତୁଷ୍ଟ ହୋଇଥିଲେ । ଭାରତ-ଭାଗ ସମ୍ବନ୍ଧିତ ତୃତୀୟ ପ୍ରସ୍ତାବଟି ତାହାଙ୍କୁ ପ୍ରୀତିକର ହୋଇ ନ ଥିଲା । କାରଣ, ଏହି ଭାଗକୁ ଚିରସ୍ଥାୟୀ କରିବା ନିମନ୍ତେ କୌଣସି ବ୍ୟବସ୍ଥା କଲେ ତାହା ବଡ ଅନିଷ୍ଟକର ହେବ । ଭାରତର ବିଭାଗକୁ ସେ ପାପ ବୋଲି ମନେ କରୁଥିଲେ । ସେ କେବେ ହେଲେ ହିନ୍ଦୁ ଓ ମୁସଲମାନ ପୃଥକ୍ ଜାତି ବୋଲି ମାନି ନାହାନ୍ତି । ଏକ ଜାତି ଧର୍ମର ପାର୍ଥକ୍ୟ ଯୋଗୁଁ ଦୁଇ ଭିନ୍ନ ସମ୍ପ୍ରଦାୟରେ ପରିଣତ ହୋଇଅଛି ବୋଲି ତାହାଙ୍କର ଏକାନ୍ତ ବିଶ୍ୱାସ ସର୍ବଦା ଥିଲା । ଧର୍ମର କାରଣରୁ ଭାରତ ବିଭକ୍ତ ହେଲେ ଭାରତରେ ଦୁର୍ଗତିର ସୀମା ରହିବ ନାହିଁ । ଭାରତରେ ଅନେକ ଧର୍ମ ଅଛି । କ୍ରମଶଃ ଧର୍ମର କାରଣରେ ଭାରତ ଅନେକ ଭାଗରେ ବିଭକ୍ତ ହୋଇପାରେ । ଏହା ଛଡ଼ା ଧର୍ମର ନାମରେ ଦୁର୍ବଳ ଶ୍ରେଣୀର ଉପରେ ଅତ୍ୟାଚାର ବଢ଼ିବାର ସମ୍ଭାବନା ଅଛି । କିନ୍ତୁ ମହାତ୍ମାଜୀ ଏପରି ଭାବିଲେ କଅଣ ହେବ ? ଇଂରେଜ ଜାତି ବହୁକାଳ ପୂର୍ବରୁ ଏ ଦେଶବାସୀଙ୍କ ରକ୍ତରେ ଭେଦବୁଦ୍ଧିର ବିଷ ପୂରାଇ ଦେଇଥିଲେ । ଏଣୁ ମହାତ୍ମାଜୀ ମହାଦେବଙ୍କ ପରି ଏ ସମସ୍ତ ବିଷ ନିଜେ ପାନ କରି ଦେଶବାସୀଙ୍କୁ ଭେଦବୁଦ୍ଧି-ବିଷରୁ ମୁକ୍ତ କରିବା ପାଇଁ ସଚେଷ୍ଟ ଥିଲେ ।

୧୯୪୭ ସାଲର ଅପ୍ରେଲ୍ ମାସ ପହିଲା ତାରିଖରେ ଦିଲ୍ଲୀରେ ବସିଥିବା ଏସିଆ ମହା ସମ୍ମିଳନୀରେ ମହାତ୍ମାଜୀ ଏସିଆ ମହାଦେଶର

ଗଠନ ସମ୍ବନ୍ଧରେ ଗୋଟିଏ ସାଂଗଠନିକ ବକ୍ତୃତା ଦେଇଥିଲେ । ଦିଲ୍ଲୀରେ ସାମ୍ପ୍ରଦାୟିକ ଦଙ୍ଗା ହୋଇଥିଲା । ମୈତ୍ରୀ ସ୍ଥାପନ ନିମନ୍ତେ ମହାତ୍ମାଜୀ ନୂଆ ଦିଲ୍ଲୀରେ ଅପ୍ରେଲ ୫ ତାରିଖଠାରେ ଚବଣଦାସ୍ୟା ପାଇଁ ଅନଶନ କରିଥିଲେ । ବଡ଼ଲାଟଙ୍କ ଉଦ୍ୟମରେ ହିଂସାମୂଳକ ସାମ୍ପ୍ରଦାୟିକ କାର୍ଯ୍ୟର ନିନ୍ଦାକରି ମହାତ୍ମାଜୀ ଓ ଜିନ୍ନା ଗୋଟିଏ ଯୁକ୍ତ ଆବେଦନ ପତ୍ର ପ୍ରଚାର କରିଥିଲେ ।

ଏଥି ଉତ୍ତରେ ନୂଆ ଦିଲ୍ଲୀଠାରେ ମେ ୬ ତାରିଖରେ ପୁନର୍ବାର ମହାତ୍ମାଜୀ ଓ ଜିନ୍ନାଙ୍କ ମଧ୍ୟରେ ସାକ୍ଷାତ୍ ସୁଯୋଗ ଘଟେ । ସେତେ-ବେଳେ ମଧ୍ୟ ଜିନ୍ନା ନିଜର ଜିଦ୍ ଛାଡ଼ିଲେ ନାହିଁ । ଭାରତ ବିଭକ୍ତ ନୋହିଲେ ହିନ୍ଦୁ ମୁସଲମାନ ସମସ୍ୟାର ସମାଧାନ ହେବ ନାହିଁ ବୋଲି ସେ କହିଲେ । କିନ୍ତୁ ଭାରତ ବିଭାଗ ଅନିବାର୍ଯ୍ୟ ବୋଲି ମହାତ୍ମାଜୀ ସ୍ୱୀକାର କଲେ ନାହିଁ । ପ୍ରକୃତିର ନିୟମକୁ କେହି ଅନ୍ୟଥା କରି ନ ପାରେ । ପ୍ରତ୍ୟେକ କ୍ଷେତ୍ରରେ ଦ୍ୱନ୍ଦ୍ୱ ଶକ୍ତି ଅଛି । ଏକ ସତ୍ତ୍ୱ-ଶକ୍ତିର ବିକାଶ ପଥରେ ତମଃ-ଶକ୍ତି ପ୍ରତିବନ୍ଧକ ସ୍ୱରୂପ ଛିଡ଼ା ହୁଏ । ସେ ପ୍ରତିବନ୍ଧକ ଲଙ୍ଘନ କରି ପାରିଲେ ଯଥାର୍ଥ ମନୁଷ୍ୟତାର ବିକାଶ ଘଟେ । ମହାତ୍ମାଜୀ ଶତ ଶତ ପ୍ରତିବନ୍ଧକ ଜୀବନରେ ଲଙ୍ଘନ କରିଅଛନ୍ତି । ଅନେକ ମୁସଲମାନ ମଧ୍ୟ ତାହାଙ୍କ ଅହିଂସା-ମନ୍ତ୍ରରେ ଦୀକ୍ଷିତ ହୋଇ ଅଛନ୍ତି । କିନ୍ତୁ ଜିନ୍ନା ମହାତ୍ମାଜୀଙ୍କ ପ୍ରବର୍ତ୍ତନାରେ ନିଜ ଜିଦ୍ ଛାଡ଼ି ପାରିଲେ ନାହିଁ । "ଯାଦୃଶୀ ଭାବନା ଯସ୍ୟ ସିଦ୍ଧିର୍ଭବତି ତାଦୃଶୀ"—ଏହି ନୀତି ଅନୁସାରେ ଚୋର ଚୋରି କରିବାକୁ ଭାବନା କରେ ଓ ସେଥିପାଇଁ କାର୍ଯ୍ୟର ସିଦ୍ଧି ଲାଭ କରେ । ଅପଣାର ମନ ଅନୁରୂପ କର୍ମର ଫଳ ସମସ୍ତେ ଲାଭ କରନ୍ତି । ଭାବନାନୁସାରେ କାର୍ଯ୍ୟ କଲେ ଈଶ୍ୱର ସିଦ୍ଧି ଲାଭ କରିଲ ହେଉ-

ଥିବା, ଗାନ୍ଧୀଙ୍କ ଦ୍ୱାରା ଉଚ୍ଚକ୍ଷଣ ଅଛି ବୋଲି ପୂର୍ବେ ବୁଝା ଯାଇଅଛି । ଏଣୁ ଜିନ୍ନା ନିଜ ଜିଦ୍ ଧରି ପାକିସ୍ଥାନ ପାଇଲେ । କିନ୍ତୁ ବ୍ରିଟିଶ ସରକାର ଜିଦ୍ ଧରି ଭାରତ ରଖିପାରିଲେ ନାହିଁ । ଅସ୍ୱାଭାବିକ କାର୍ଯ୍ୟ-ସାଧନାରେ ଜିଦ୍ ଧରିବା ଶୋଭନୀୟ ନୁହେ । କାର୍ଯ୍ୟ ସିଦ୍ଧି ହେଲେ ମଧ୍ୟ ସେ ସିଦ୍ଧି କ୍ଷଣିକ ଓ ଅନିଷ୍ଟକର । ମହାତ୍ମାଜୀଙ୍କର ଭାରତବାସିଙ୍କ ପାଇଁ ସ୍ୱାଧୀନତା-ଅର୍ଜନ ମୁଖ୍ୟ ଉଦ୍ଦେଶ୍ୟ ଥିଲା । ତେଣୁ ହିନ୍ଦୁ ମୁସଲମାନ ମଧ୍ୟରେ ଐକ୍ୟ ସ୍ଥାପନ ନିମନ୍ତେ ସାଧନା କରିବାକୁ ସେ ଉପଯୁକ୍ତ ଅବସର ପାଇ ନାହାନ୍ତି । ତାହାଙ୍କୁ ଯଥାର୍ଥ ଅବସର ମିଳି ନ ଥିଲା ଜିନ୍ନାଙ୍କ ଜିଦ୍ ଦ୍ୱାରା ଏ ସମ୍ଭାବନା ନ ଥିଲା ।

୧୯୪୭ ସାଲର ଅଗଷ୍ଟ ୧୫ ତାରିଖରେ ଭାରତ ସ୍ୱାଧୀନତା ଲାଭ କରିବ ଓ ଭାରତର ସର୍ବତ୍ର ସ୍ୱାଧୀନତା ଉତ୍ସବ ପାଳିତ ହେବ ବୋଲି ସ୍ଥିର ହୋଇଥିଲା । କିନ୍ତୁ ଏଥିପୂର୍ବରୁ କଲିକତାରେ ସାମ୍ପ୍ରଦାୟିକ ଦଙ୍ଗା ଲାଗି ରହିଥାଏ । ଐକ୍ୟ ସ୍ଥାପନ ନିମନ୍ତେ ମହାତ୍ମାଜୀ କଲିକତା ଆସି ବେଲିଆଘାଟରେ ଜଣେ ସନ୍ତାପିତ ମୁସଲମାନ ଗୃହରେ ଅବସ୍ଥାନ କଲେ । ବଙ୍ଗଳାର ଭୂତପୂର୍ବ ପ୍ରଧାନ ମନ୍ତ୍ରୀ ସୁହ୍ରାବର୍ଦ୍ଦି ସାହେବ ମହାତ୍ମାଜୀଙ୍କର ଏହି ଅଭିଯାନରେ ସହ-ଯୋଗିତା କରିଥିଲେ । ସ୍ପର୍ଶମଣିର ସଂଯୋଗରେ ଲୌହ ସ୍ୱର୍ଣ୍ଣ ପାଲଟିବା ଭଳି ମହାତ୍ମାଜୀଙ୍କ ଶାନ୍ତି-ଅଭିଯାନର ସମ୍ବାଦ ପ୍ରଚାରିତ ହେବା ମାତ୍ରେ ୧୪ ତାରିଖ ଅପରାହ୍ନରେ ଅଭୂତପୂର୍ବ ଭାବରେ ସହରର ସର୍ବତ୍ର ଶାନ୍ତି ପୁନଃ ପ୍ରତିଷ୍ଠିତ ହେଲା । ସିଦ୍ଧ ପୁରୁଷଙ୍କର ମୋହନ-ମନ୍ତ୍ରର ପ୍ରୟୋଗରେ ଏ ମିଳନ ସମ୍ଭବପର ହେଲା ବୋଲି କଲିକତାର ଆବାଳବୃଦ୍ଧବନିତାଙ୍କ ମୁଖରୁ ଶୁଣା ଯାଉଥାଏ । ମିଳନର ଆନନ୍ଦ ସଙ୍ଗେ ମିଶିଗଲା—ସ୍ୱାଧୀନତାର ଉତ୍ସବ । କଲିକତାରେ ଏପରି

ଦୃଶ୍ୟ କେହି କେବେ ଦେଖି ନ ଥିଲା । ଉତ୍କଳୀୟ ପ୍ରାଙ୍ଗଣରେ ସମସ୍ତେ ବସି ଯାଉଥିଲେ । ଏପରି କି, ଖାଇବା ପିଇବା କଥା ମଧ୍ୟ ସମସ୍ତେ ପାସୋରି ଦେଇଥିଲେ । ଘର ଭିତରେ ସେଦିନ କେହି ନ ରହି କି ଶିଶୁ, କି ବୃଦ୍ଧ, କି ଯୁବକ—ସମସ୍ତେ ଦାଣ୍ଡରେ ବୁଲି ଆନନ୍ଦ ଉପଭୋଗ କରୁ ଥାଆନ୍ତି । ଦିନ ଗଲା, ରାତି ହେଲା, କିନ୍ତୁ ସହରରେ ରାସ୍ତାରୁ ଲୋକାରଣ୍ୟ ଊଣା ହେଲା ନାହିଁ । ପୂର୍ବ କେତେ ଦିନର ମେଘାଚ୍ଛନ୍ନ ଉତ୍ତରେ ପ୍ରକୃତି ଦେବୀ ସେଦିନ ହସ ହସ ବଦନରେ ଆକାଶ ଅଲଙ୍କୃତ କରିଥିଲେ । କିନ୍ତୁ ବେଲିଆଘାଟରେ ତପସ୍ୱୀ ଜଣକ ଅପରିବର୍ତ୍ତନୀୟ ହୃଦୟରେ ଶାନ୍ତ ମୂର୍ତ୍ତି ଧାରଣ କରି ବସି ଥାଆନ୍ତି । କି ଆଶ୍ଚର୍ଯ୍ୟର କଥା ! ଯାହାଙ୍କ ତପସ୍ୟାର ସିଦ୍ଧିରେ କୋଟି କୋଟି ନରନାରୀଙ୍କ ହୃଦୟ ଆନନ୍ଦ-ବନ୍ୟାରେ ପ୍ଳାବିତ ହୋଇ-ଅଛି ସ୍ୱୟଂ ସେହି ତପସ୍ୱୀଙ୍କ ହୃଦୟରେ ଆନନ୍ଦର ତରଙ୍ଗ ନାହିଁ କାହିଁକି ? ଅହୋ ! ଆମେ କି ଅଧମ ! ବୁଝିବାକୁ ଶକ୍ତି ନାହିଁ । ବୁଝିବାକୁ ଆମେ ମଧ୍ୟ ଚେଷ୍ଟା କରୁ ନାହୁଁ । ମହାତ୍ମାଜୀ ସାକ୍ଷାତ ଅହିଂସ ବୁଦ୍ଧ । ଜେଲମାନ କ୍ଳେଶ ଅନୁଭବ ନ କରି ଶତ ଶତ ଯାତନାକୁ ଯେଉଁ ଉଦ୍ଦେଶ୍ୟରେ ମହାତ୍ମାଜୀ ବରଣ କରୁଥିଲେ ସେ ଉଦ୍ଦେଶ୍ୟ ସାଧିତ ହେଲା ଉତ୍ତାରୁ ତାହାଙ୍କ ହୃଦୟରେ ଆନନ୍ଦ ନାହିଁ। ସୁଖ ଓ ଦୁଃଖ ତାହାଙ୍କ ପକ୍ଷରେ ସମାନ । ଅହଙ୍କାର ତଳ ପାହାରେ ଥିଲେ ସେ ଉତ୍ଫୁଲ୍ଲ ହୋଇ ରହିପାରି ନ ଥାଆନ୍ତେ । ତାହାଙ୍କ ହୃଦୟ ଅଧିକାର କରିବା ନିମନ୍ତେ ଅହଙ୍କାରକୁ ସେ ମୁହୂର୍ତ୍ତେ ସୁଯୋଗ ଦେଉ ନ ଥିଲେ । କୌଣସି ସାଧନାରେ ସିଦ୍ଧି ଲାଭ କରିବା ପୂର୍ବରୁ ଅନ୍ୟ ସାଧନାରେ ବ୍ରତୀ ହେବା ନିମନ୍ତେ ସେ ସ୍ଥିର କରି ନେଉଥିଲେ । ସ୍ୱାଧୀନତା-ଲାଭ ଉତ୍ତାରୁ ଐକ୍ୟ-ସମସ୍ୟା ତାହାଙ୍କ ଚିତ୍ତ ଅଧିକାର କରିଥିଲା । ଏହାପରି ଅହଙ୍କାର ଦୂର କରିବାର ଉପାୟ

ଏ ଅହଙ୍କାର ଶୂନ୍ୟତା ତାହାଙ୍କ ଠାରେ ପ୍ରଚୁରଭାବରେ ପୂର୍ଣ୍ଣ ହୋଇ-ଥିଲା । ଏଣୁ ସେ ମହାମାନବ ବୋଲି ନ କହି ସାକ୍ଷାତ୍ ପରଂବ୍ରହ୍ମ କହିଲେ ତିଳେମାତ୍ର ଅତ୍ୟୁକ୍ତି ତହିଁରେ ରହିବ ନାହିଁ । ସେ କହୁଥିଲେ । "ମୋର ନଶ୍ୱର ଦେହ ଭସ୍ମୀଭୂତ ହେଲେ ମୋର କାର୍ଯ୍ୟରେ ବ୍ୟାଘାତ ହେବ" । କିଏ ବା ବ୍ୟାଘାତ କରିବ ? ତାହାଙ୍କ କାର୍ଯ୍ୟ ଅନନ୍ତ ସିନ୍ଧୁ । ତାହାକୁ କଳିବାକୁ ଶକ୍ତି କାହାର ଅଛି ?

୧୯୪୭ ସାଲର ସେପ୍ଟେମ୍ବର ପହିଲାରେ କଲିକତାରେ ପୁଣି ସାମ୍ପ୍ରଦାୟିକ ଦଙ୍ଗାର ସୂଚନା ଦେଖାଗଲା । ସଙ୍ଗେ ସଙ୍ଗେ ମହାତ୍ମାଜୀ ଅନଶନ ଆରମ୍ଭ କଲେ । ଶାନ୍ତି ଫେରି ନ ଆସିବା ପର୍ଯ୍ୟନ୍ତ ସେ ଅନଶନ କରିବେ ବୋଲି ପଥର ପଣ କରିଥିଲେ । ମାତ୍ର ସହସା ୨୦ ଘଣ୍ଟା ମଧ୍ୟରେ ଶାନ୍ତି ଫେରି ଆସିଲା । ଏ ସମସ୍ତ ଦେଖି ଦେଖି ଆମେ ମହାତ୍ମାଜୀଙ୍କ କଥାରେ ଅଟଳ ଆସ୍ଥା ରଖୁନାହୁଁ । ସ୍ୱାଧୀନତାର ଆହବକୁ ଭଗବତ୍-ପ୍ରାର୍ଥନାରେ ପର୍ଯ୍ୟବସିତ କରିବା ପାଇଁ ସେ ଉପଦେଶ ଦେଇଥିଲେ ମଧ୍ୟ ଆମେ ତାହା ଶୁଣି ନାହୁଁ । ଆମେ ଅହଙ୍କାରୀ, ଆମେ ପାପୀ । ତାହାଙ୍କ କଥାକୁ ଶୁଣିବୁ କିପରି ? ପାପୀ ମହାତ୍ମାଜୀଙ୍କ କାର୍ଯ୍ୟର ବ୍ୟାଘାତ କରିବାକୁ କଦାପି ସମର୍ଥ ନୁହେ । ପାପୀର ଲେଖନୀ ଏଠାରେ ତାହାଙ୍କ କାର୍ଯ୍ୟ ବ୍ୟାଘାତ କରୁଅଛି ବୋଲି ମନେ ନ କରିବା ପାଇଁ ଲେଖକ ପାଠକମାନଙ୍କୁ ଅନୁରୋଧ କରୁଅଛି । ତାହାଙ୍କ ଗୁଣର କଣା ମାତ୍ର ସ୍ମରଣ କରି ତରିବା ଆଶାରେ ଲେଖକ ଲେଖନୀ ଚଳାଇଅଛି ।

ଏହି ୧୯୪୮ ସାଲର ଜାନୁଆରୀ ୨୦ ତାରିଖରେ ନୂଆ ଦିଲ୍ଲୀରେ ହିନ୍ଦୁ ମୁସଲମାନମାନଙ୍କ ଐକ୍ୟ ସ୍ଥାପନ ପାଇଁ ଆହୂତ ପ୍ରାର୍ଥନା ସଭାରେ ବକ୍ତୃତା ଦେବାବେଳେ ତାହାଙ୍କ ଠାରୁ ଦଶ ଗଜ

ଧୂର୍ଣ୍ଣରେ ଗୋଟିଏ ଦେଶୀ ବୋମା ବିସ୍ଫୋରିତ ହୋଇଥିଲା । କିନ୍ତୁ ଉପଲମାନ ବିଚଳିତ ନୋହି ମହାତ୍ମାଜୀ ବକ୍ତୃତା ଦେବାରେ ଲାଗିଥିଲେ । ୧୯୩୪ ସାଲର ଜୁନ୍ ୨୫ ତାରିଖରେ ତାହାଙ୍କ ଉପରକୁ ମଧ୍ୟ ବୋମା ନିକ୍ଷେପ କରା ଯାଇଥିଲା । କିନ୍ତୁ ତାହାଙ୍କ ଜୀବନ ବ୍ୟାପୀ ଲକ୍ଷ୍ୟ ସିଦ୍ଧ ନୋହିଥିବାରୁ ସେ ବୋମାର ଲକ୍ଷ୍ୟ ଭ୍ରଷ୍ଟ ହୋଇଥିଲା । ଏବେ ୧୯୪୮ ସାଲର ଜାନୁଆରୀ ୩୦ ତାରିଖରେ ଅପରାହ୍ନ ୫ଟା ସମୟରେ ଆତତାୟୀର ଗୁଳିରେ ସେ ସହସା କୈବଲ୍ୟ ପ୍ରାପ୍ତ ହେବେ ବୋଲି କିଏ ଜାଣିଥିଲା ? ଓଃହୋ ! ସ୍ୱାଧୀନତାର ଅନ୍ନଦାତାକୁ ଶତ୍ରୁଗଣେ ଦଳିଦେଲା ଏ କି ଦାରୁଣ ଯାତନା !

ରଘୁପତି ରାଘବ ରାଜାରାମ
ପତିତ ପାବନ ସୀତାରାମ ।
ମଙ୍ଗଳ ଦରଶନ ରାଜାରାମ
ପତିତ ପାବନ ସୀତାରାମ ।
ଶୁଭ ଶାନ୍ତି ବିଶ୍ୱାତ୍ମକ ରାଜାରାମ
ପତିତ ପାବନ ସୀତାରାମ ।
ବରାଭୟ ଦାନରତ ରାଜାରାମ
ପତିତ ପାବନ ସୀତାରାମ ।
ନିର୍ଭୟ କର ପ୍ରଭୁ ରାଜାରାମ
ପତିତ ପାବନ ସୀତାରାମ ।
ଦୀନ ଦୟାଳୁ ରାଜାରାମ
ପତିତ ପାବନ ସୀତାରାମ ।
ରାଜା ରାମ, ଜୟ ସୀତାରାମ
ପତିତ ପାବନ ସୀତାରାମ ।

## ଆତ୍ମ-ଦର୍ଶନ

ପାର୍ଥିବ ରାଜନୈତିକ ସ୍ୱାଧୀନତା ଦେବାଲାଗି ମହାତ୍ମାଙ୍କ ଭାରତରେ ଅବତୀର୍ଣ୍ଣ ହୋଇ ନ ଥିଲେ । ଚିରନ୍ତନ ଆଧ୍ୟାତ୍ମିକ ସ୍ୱାଧୀନତାର ପଥ ବିଶ୍ୱବାସୀଙ୍କୁ ଦେଖାଇବା ଲାଗି ସେ ନରଦେହ ଧାରଣ କରିଥିଲେ । ସେହି ପଥର ନାମ—'ଆତ୍ମ-ଦର୍ଶନ' । ସେ କହି ଅଛନ୍ତି "ମୁଁ ଯାହା ଲାଭ କରିବାକୁ ଇଚ୍ଛାକରେ ଓ ଯାହାର ଅନୁସନ୍ଧାନରେ ତିରିଶ ବର୍ଷ ହେଲା ଲାଗିଅଛି ତାହା ଆତ୍ମଦର୍ଶନ, ଈଶ୍ୱର ସାକ୍ଷାତ୍କାର ଅଥବା ମୋକ୍ଷ । ଯାହା ଜଣକ ପକ୍ଷରେ ସମ୍ଭବ ତାହା ଅପରର ପକ୍ଷରେ ମଧ୍ୟ ସମ୍ଭବ । ଏଥିପାଇଁ ମୁଁ ନିଜର ସାଧନା କାହାର ନିକଟରେ ଗୋପନ କରିନାହିଁ ।" ଏ ସମସ୍ତ କଥାର ଅର୍ଥ କଅଣ ? ଯେମିତି ଜଣେ ଗାଳି ଦେଲେ ମୁଁ ଯଦି ଦୁଃଖ ଅନୁଭବ କରୁଥାଏ ସେମିତି ମୁଁ କାହାକୁ ଗାଳି ଦେଲେ ସେ ମଧ୍ୟ ଦୁଃଖ ଅନୁଭବ କରିବ—ଏହିପରି ବିଶ୍ୱବରର କଥାରେ, ଲେଖାରେ ସଂଯତ ହେବାକୁ ଆତ୍ମଦର୍ଶନ କହନ୍ତି । ସେଥିପାଇଁ ସେ କହି ଅଛନ୍ତି, "ଯାହା ମୁଁ କହେ, ଯାହା ମୁଁ ଲେଖେ ତହିଁରେ ଏକମାତ୍ର ଆତ୍ମଦର୍ଶନ ପ୍ରତି ଲକ୍ଷ୍ୟ ରଖିଥାଏ" । ସଭିଙ୍କର ଆତ୍ମଦର୍ଶନର ସୁଯୋଗ ଘଟେ । କିନ୍ତୁ ତାହାକୁ ଧରି ରଖିବା ପାଇଁ ସମସ୍ତଙ୍କର ଶକ୍ତି ନ ଥାଏ । ଯାହା ସାଧାରଣ ଲୋକେ ଆତ୍ମାରେ ଦର୍ଶନ କରନ୍ତି ତାହା ସହସା ସେମାନଙ୍କ ଆତ୍ମାରେ ଲୀନ ହୋଇ ଯାଏ । ଯେ ଯାହାକୁ ଧରି ରଖିପାରେ ସେ ମହାତ୍ମାରେ ପରିଣତ ହୁଏ । ଲୋକ-ସେବାରେ ଆତ୍ମନିୟୋଗ କରି ତାହାକୁ ଧରି ରଖିବାର ସହଜ ପନ୍ଥା ସେ ଦେଖାଇ ଅଛନ୍ତି । ଏଠାରେ ବୁଦ୍ଧଦେବଙ୍କଠାରୁ ତାହାଙ୍କର ପାର୍ଥକ୍ୟ ଦେଖାଯାଏ । ବୌଦ୍ଧଧର୍ମ ନିଷ୍କ୍ରିୟ, ମହାତ୍ମା ଗାନ୍ଧୀଙ୍କର ଧର୍ମ ସକ୍ରିୟ । ଗୀତାର ଧର୍ମରେ ଅନ୍ୟାୟର ବିରୁଦ୍ଧରେ ହିଂସାର ଅସ୍ତ୍ର ଭଗବାନଙ୍କ ପ୍ରତି ଲକ୍ଷ୍ୟ ରଖି ଧାରଣ

କରିବାକୁ ଉପଦେଶ ଦିଆ ଯାଇଅଛି । କିନ୍ତୁ ମହାତ୍ମା ଗାନ୍ଧୀଙ୍କ ମର୍ମରେ ଅହିଂସାର ଅସ୍ତ୍ର ଧାରଣ କରିବା ସମର୍ଥିତ ହୋଇଅଛି । ହିଂସାର ଅସ୍ତ୍ର ସବୁ କ୍ଷେତ୍ରରେ ଧାରଣ କରିବା ସମ୍ଭବପର ନୁହେ । ଦୈନନ୍ଦିନ ଜୀବନରେ ହିଂସାର ଅସ୍ତ୍ର ଧାରଣ କଲେ ଜୀବନର ସୁଖ ଶାନ୍ତି ନଷ୍ଟ ହେବ ଓ ସମାଜର ଅସ୍ତିତ୍ୱ ମଧ୍ୟ ରହିବ ନାହିଁ । ପୁଅ ବା ଭାଇ କୌଣସି ଅପରାଧ କଲେ ତାହାର ପ୍ରାଣନାଶ କରିବା ପାଇଁ ଆମ୍ଭାରୁ ନିର୍ଦ୍ଦେଶ ମିଳେ ନାହିଁ । ଏପରି ନିର୍ଦ୍ଦେଶ ମିଳୁଥିଲେ ଆଜି ପର୍ଯ୍ୟନ୍ତ ସମାଜର ଅସ୍ତିତ୍ୱ ରହି ନ ଥାଆନ୍ତା । କାରଣ ପୁଅ ଭାଇ ଶତ ଶତ ଅପରାଧ କଲେ ମଧ୍ୟ ମନୁଷ୍ୟ ତାହା ସମ୍ଭାଳି ରହେ । ସେମାନଙ୍କ ବିନାଶରେ ତତ୍ପର ହୁଏ ନାହିଁ । ପ୍ରକୃତିର ଏକପ୍ରକାର ନିୟମ ସବୁ କ୍ଷେତ୍ରରେ ଦେଖାଯାଏ, କିନ୍ତୁ ସାଧାରଣ ମନୁଷ୍ୟ ତାହା ବୁଝି ପାରେ ନାହିଁ । ସେଥିପାଇଁ ବିନା ହିଂସାରେ ଶାସନ ହେବ ନାହିଁ ବୋଲି ଅନେକେ କହି ଥାଆନ୍ତି । ଯେଉଁମାନଙ୍କର ଆତ୍ମ-ଦର୍ଶନ ଘଟି ନ ଥାଏ ସେମାନେ ଏପରି କହିବା ବିଚିତ୍ର ନୁହେଁ । ଆତ୍ମଦର୍ଶନ ଘଟିଲେ କେଉଁଠାରେ କେଉଁ ଅନ୍ୟାୟର ବିରୁଦ୍ଧରେ କିପରି ଅହିଂସାର ଅସ୍ତ୍ର ଧାରଣ କରିବାକୁ ହେବ ତାହା ଆପେ ଦେଖା ଯିବ । ମହାତ୍ମାଜୀଙ୍କର ଆତ୍ମଦର୍ଶନ ଥିବାରୁ ସ୍ଥଳ ବିଶେଷରେ ପ୍ରୟୋଗ କରିବା ଅହିଂସା ଅସ୍ତ୍ର ତାହାଙ୍କୁ ମିଳି ଯାଇଥିଲା । ନୋହିଲେ ଶକ୍ତିଶାଳୀ ସରକାରଙ୍କ ବିରୁଦ୍ଧରେ ସେ ସଂଗ୍ରାମ ଚଳାଇ ପାରି ନ ଥାନ୍ତେ । ଏ ସଂଗ୍ରାମରେ ହିଂସାର ଅସ୍ତ୍ର ବ୍ୟବହାର କରିବା ମଧ୍ୟ ଆଦୌ ସମ୍ଭବପର ନ ଥିଲା ।

ଆମ୍ଭାକୁ ମହାତ୍ମାଜୀ ସତ୍ୟ, ଶିବ ଓ ସୁନ୍ଦର ରୂପେ ଉପଲବ୍ଧି କରିଥିଲେ । କିପରି ? ଇନ୍ଦ୍ରିୟ ସଂଯତ ହେଲେ ଓ ଅହଙ୍କାର

ଅନୁଭୂତି ହେଲେ ଅନ୍ତରର ପ୍ରେରଣା ସତ୍ୟ, ଶିବ ଓ ସୁନ୍ଦର ରୂପେ ପ୍ରତିଭାତ ହୁଏ । ବିବାହ କରିବା ନିମନ୍ତେ ସମସ୍ତଙ୍କ ଆତ୍ମାରୁ ପ୍ରେରଣା ଜାତହୁଏ । ମୁଁ କହେ ଏହା ସତ୍ୟ, ଏହି ପ୍ରେରଣା ସମାଜର ମଙ୍ଗଳ ଓ ସୌନ୍ଦର୍ଯ୍ୟ ପାଇଁ । ସେଥିପାଇଁ ବିବାହକୁ ସେ ସମର୍ଥନ କରି ଅଛନ୍ତି । ସୌନ୍ଦର୍ଯ୍ୟ ସୃଷ୍ଟି କରିବା ପାଇଁ ମଧ୍ୟ ଅନ୍ତରରୁ ପ୍ରେରଣା ଆସେ । ସେଥିପାଇଁ ସେ ଧୋତି ପରିଚ୍ଛନ୍ନ ହେବା ନିମନ୍ତେ ଓ ଉଦ୍ୟାନ ପ୍ରଭୃତି ପ୍ରସ୍ତୁତ କରି ଆଶ୍ରମର ଶୋଭା ବଢ଼ାଇବା ନିମନ୍ତେ ଉଦ୍‌ଯୋଗୀ ଥିଲେ । କିନ୍ତୁ ଆଧୁନିକ ରୁଚିର ବିଳାସ ସେ ପସନ୍ଦ କରୁ ନ ଥିଲେ । ମହାପୁରୁଷଙ୍କ ଆବିଷ୍କୃତ ସତ୍ୟକୁ ଶାସ୍ତ୍ର-ଜ୍ଞାନର ନିକିତିରେ ତୁଳିଲେ ତାହାର ଗୁରୁତା କିଛି ହୁଏ ନାହିଁ । ସେମାନଙ୍କ ଆଦର୍ଶ ଅନୁସରଣ କଲେ ତାହାଙ୍କ ଆବିଷ୍କୃତ ସତ୍ୟର ସାରବତ୍ତା ଆମେ ବୁଝିବୁ ଅଥବା ଅନେକ ସତ୍ୟ ଆମେ ଆବିଷ୍କାର କରି ପାରିବୁ । ସେଥିପାଇଁ ମହାତ୍ମାଜୀ କହି ଅଛନ୍ତି ଯେ, ତାହାଙ୍କ ଆବିଷ୍କୃତ ସତ୍ୟ ଚରମ ସତ୍ୟ ନୋହିପାରେ । ଯାହା ହେଉ, ସେ ଯେଉଁ କଥା କହୁ ଅଛନ୍ତି ସେଥି ମଧ୍ୟରୁ ନିମ୍ନଲିଖିତ କେତୋଟି କଥା ଆମର ସର୍ବଦା ମନେ ରଖିବା ଉଚିତ ।

(୧)—ସତ୍ୟର ପୂଜା କରିବା ପାଇଁ ଆମ ଜୀବନର ଅସ୍ତିତ୍ୱ ଅଛି । ସେଥି ଲାଗି ଆମର ଅନ୍ତରରୁ ପ୍ରବୃତ୍ତି ଜାତହୁଏ ଓ ପ୍ରତିମୁହୂର୍ତ୍ତରେ ଶ୍ୱାସ ପ୍ରଶ୍ୱାସର କ୍ରିୟା ଚାଲେ । ଯଦି ଆମେ ସତ୍ୟର ପୂଜା କରିପାରୁ ତେବେ ଅନ୍ୟ ସମସ୍ତ ପ୍ରବୃତ୍ତି ଆମର ଅଧୀନରେ ରହିବ । ଅହିଂସା ଛଡ଼ା ସତ୍ୟକୁ ପୂଜା କରାଯାଇ ନ ପାରେ । ସତ୍ୟ ଓ ଅହିଂସା ଗୋଟିଏ ଟଙ୍କାର ଏ ପାଖ ସେ ପାଖ ବୋଲିହେଲେ ଚଳେ । ଅହିଂସା ଅଭ୍ୟାସ କଲେ ସଂଯମ ମଧ୍ୟ ଆୟତ୍ତ ହୁଏ ।

(୨)—ସତ୍ୟର ସନ୍ଧାନ ପାଇଁ ନିର୍ଭୀକତା ମଧ୍ୟ ଲୋଡ଼ା ହୁଏ । ନିର୍ଭୀକତା ନ ଥିଲେ ଅହିଂସା ପାଳନ କରିବା ଅସମ୍ଭବ । ଈଶ୍ବର ଲାଭର ପଥ ବୀର ପାଇଁ ଉନ୍ମୁକ୍ତ । ଭୀରୁ ପାଇଁ ମଧ୍ୟ ନୁହେ । ସତ୍ୟ ଏକା ହରି, ସତ୍ୟ ଏକା ରାମ, ସତ୍ୟ ଏକା ନାରାୟଣ ।

(୩)—ଅସ୍ପୃଶ୍ୟତା ହିନ୍ଦୁ ଧର୍ମର ଅଙ୍ଗ ନୁହେ । ହିନ୍ଦୁମାନଙ୍କର ଏହା ଗୋଟିଏ ଭ୍ରମ, ଗୋଟିଏ ପାପ । ଏହି ପାପକୁ ଦୂର କରିବା ପ୍ରତ୍ୟେକ ହିନ୍ଦୁର ପରମ ଧର୍ମ ଓ କର୍ତ୍ତବ୍ୟ । ଯେଉଁ ହିନ୍ଦୁମାନେ ଏହାର ଧର୍ମ ବୁଝନ୍ତି ସେମାନେ ଅନ୍ତତଃ ଏହି ଅସ୍ପୃଶ୍ୟତା ଦୂର କରି ସମସ୍ତଙ୍କୁ ଭାଇ ଭଉଣୀ ରୂପେ ଗ୍ରହଣ କରିବା ସେମାନଙ୍କ ପକ୍ଷରେ ପରମ ସେବା ।

(୪)—ବିନା କାରଣରେ ପ୍ରାଣ ଦାନ କଲେ ବୋଲି ଆମ ପ୍ରାଣ ଲକ୍ଷ୍ୟ ସ୍ଥାନ ନୁହେ । ସ୍ୱାଧୀନତା ଅପେକ୍ଷା ଆମ ପ୍ରାଣର ମୂଲ୍ୟ ବେଶୀ, ଏହା ଆମେ ମନେ କରିବା ଉଚିତ । ପ୍ରୟୋଜନ ପଡ଼ିଲେ ପ୍ରାଣଦାନ କରିବାକୁ ହେବ ଓ ସେଥିପାଇଁ ଈଶ୍ବର ଆମଙ୍କୁ ଆଶୀର୍ବାଦ କରନ୍ତେ । ବିନା କାରଣରେ ପ୍ରାଣ ବଳି ଦେବା ଉଚିତ ନୁହେ ।

(୫)—ଅହିଂସା ଦୁର୍ବଳର ଅସ୍ତ୍ର ନୁହେ । ଏହା ସବାପେକ୍ଷା ଶକ୍ତିମାନର ଅସ୍ତ୍ର । ଅହିଂସାର ବଳ ମାଂସପେଶୀର ବଳ ନୁହେ । ଏବଂ ଅହିଂସ-ଲୋକ ପକ୍ଷରେ ମାଂସପେଶୀର ବଳ ଲୋଡ଼ା ନାହିଁ, ହୃଦୟର ବଳ ତାହା ପକ୍ଷରେ ଅପରିହାର୍ଯ୍ୟ । ଯଦି କୌଣସି ଜାତି କୌଣସି ନା କୌଣସି କାରଣରୁ ସ୍ୱାଧୀନତା ହରାଏ । ଏହି କାରଣ ଦୁର୍ବଳତା ଛଡ଼ା ଆଉ କିଛି ନାହିଁ ।

ଏହିପରି ମହାତ୍ମାଗଣ ଅନେକ ଉପଦେଶ ଦେଇ ଅଛନ୍ତି । କେବଳ କଥାରେ ନୁହେଁ—ନିଜ ଜୀବନର କର୍ମ ମଧ୍ୟରେ ସେହି ଗୁଡ଼ିକୁ ମୂର୍ତ୍ତିମନ୍ତ କରିଯାଇ ଅଛନ୍ତି । କିନ୍ତୁ ଆମେ ମୂଢ଼ ହୋଇ ଥିବାରୁ ସେ ଗୁଡ଼ିକୁ ବୁଝି ପାରୁ ନାହୁଁ । ଏସବୁ ଗୁଡ଼ିକୁ ବୁଝି ପାରିଲେ ଦେଶର ଶିଳ୍ପ ବାଣିଜ୍ୟର ଉନ୍ନତି ପାଇଁ ଯତ୍ନ କରିବା ଆମର ପ୍ରୟୋଜନ ନାହିଁ । ଆମେ ତାହାଙ୍କ ଉପଦେଶ ମାନି ଚାଲିଲେ ପ୍ରକୃତ ମନୁଷ୍ୟତ୍ୱ ଲାଭ କରନ୍ତୁ । ମନୁଷ୍ୟତ୍ୱ ଲାଭ କଲେ ଆପେ ଆପେ ଦେଶର କଲ୍ୟାଣ ସାଧିତ ହୁଅନ୍ତା । କିନ୍ତୁ ଦେଶର ଗତି ସେ ଦିଗକୁ ନାହିଁ । ହିଂସା ଓ ଅହଙ୍କାର ଦେଶରେ କ୍ରମଶଃ ବଢ଼ୁଅଛି । ମୁକ୍ତି ବା ଚାହୁଁଛି କିଏ ? ମୁକ୍ତି ନ ଚାହିଁଲେ ମନପ୍ରାଣ ଢାଳି କାର୍ଯ୍ୟ କରିବା ପାଇଁ କାହାର ପ୍ରବୃତ୍ତି ଜନ୍ମିବ ନାହିଁ । ବହୁକାଳ ପରାଧୀନ ହୋଇ ରହି ଥିବାରୁ ଆଳସ୍ୟ ଆମ ମଜ୍ଜାରେ ବସିଯାଇଅଛି । ବିଦେଶୀ ଶାସକ ଯେଉଁ ଭେଦ ବୁଦ୍ଧିର ବୀଜ ଆମ ହୃଦୟରେ ପୋତି ଦେଇଥିଲେ ତାହା ବିଶାଳ ତରୁରେ ପରିଣତ ହୋଇଅଛି । ଦେଶରେ ଉପଯୁକ୍ତ ଶିକ୍ଷାର ପ୍ରଚାର ହୋଇ ନ ପାରିଲେ ଉକ୍ତ ଦୋଷମାନ ସହଜରେ ଦୂରୀଭୂତ ହେବ ନାହିଁ । ସେଥିପାଇଁ ଉପଯୁକ୍ତ ଶିକ୍ଷା ଜାତିର ଉନ୍ନତିର ମୂଳ କାରଣରୂପେ ସବୁ ଦେଶରେ ସବୁ କାଳରେ ବିବେଚିତ ହୋଇଆସେ । ସୁତରାଂ ଉପଯୁକ୍ତ ଶିକ୍ଷାର ପନ୍ଥା ନିର୍ଦ୍ଦେଶ କରିବା ପ୍ରଧାନ କର୍ତ୍ତବ୍ୟ । ପ୍ରାଚୀନ ଭାରତରେ ତ୍ୟାଗୀମାନଙ୍କ ହାତରେ ଶିକ୍ଷାଭାର ଥିଲା । ଯେତେ ଦିନ ଯେପରି ତ୍ୟାଗୀବୀର ମାନଙ୍କ ହାତକୁ ଆମ ଦେଶର ଶିକ୍ଷାଭାର ନ ଯାଇ ଧନ ଲୋଭୀ ବା ମର୍ଯ୍ୟାଦା ଲୋଭୀମାନଙ୍କ ହାତରେ ଆମ ଦେଶର ଶିକ୍ଷାଭାର ଅଛି ସେତେ ଦିନ ପର୍ଯ୍ୟନ୍ତ ଆମ ଶିକ୍ଷାର ଉନ୍ନତି ଅସମ୍ଭବ ।

---